# କାବ୍ୟ ସଞ୍ଚୟନ

## ପ୍ରଥମ ଖଣ୍ଡ

ଖ୍ରୀ. ୧୯୨୩-୧୯୪୩



ବୈକୁଣ୍ଠନାଥ ପଟ୍ଟନାୟକ ।

ପ୍ରକାଶକ— ସବୁଜ ସାହିତ୍ୟ ସମିତି,

କଟକ ।

୧୯୪୪



ତେଉସନେ ପ୍ରୀତିରୁ ବନ୍ଧୁ ସୁଧା ପାଉ ଖଣି ?
ପ୍ରୀତିବନ୍ୟା ତୁମ ଲାଗି ବହିବ ଉଜାଣି !
ଯଉବନ ଗଲେ ଜରା ହେବ ଯଉବନ,
ତୁମ୍ଭ ପ୍ରୀତି ଶୁଷ୍କ କାଷ୍ଠ ଅଥବା ଚନ୍ଦନ —
ପଢ଼ିବ ସେ ଦନ ଧରା ! କାହିଁ ପାଇଁ ଡର ?
ପାଷାଣରେ ହେଲେ ଘଷି ପୀରତି ସୁନ୍ଦର !
କାଠକୁ କରୁଛ ଯତ୍ନ, ଦେଖି ନ ଚନ୍ଦନ !
"ଗଲ ଗଲ ରୂପ" ବୋଲି ହୃଦୟ ସ୍ପନ୍ଦନ—
ଦିବସେ ସହସ୍ରଥର । କର ଅତି ଯତ୍ନ !
ବଢ଼ିଯାଏ ଅବ୍ୟଳତା, ନାହିଁ ମିଳେ ରତ୍ନ !

— ୩ —

ଝଡ଼ିବାର ଯାହା ଝଡ଼ୁ ! କାହିଁକି ଅକୁଳ ?
ପୁଣି ଶୂନ୍ୟ ବ୍ରତତୀରେ ପରିପୂର୍ଣ୍ଣ ଫୁଲ !
ଗଲେ ପୁରାତନ ନବୀନର ଅଗମନ,
ସବୁ ବିବର୍ତ୍ତନ ମେଳେ ବିକଶେ ଜୀବନ !
ବସନ୍ତ ଦେବତା, ଅଜ କିବା ଭ୍ରାନ୍ତିଭୟ ?
ଅବର୍ତ୍ତନେ ବିବର୍ତ୍ତନେ ଜୀବନର ଜୟ !
ଜୀବନ ଅମୃତ ରୂପ ପୀରତି ବିକାଶ .
ମୃତ୍ୟୁ[illegible]ପାଶୁ ଦେଲେ ସବୁ ରହେ ପ୍ରୀତି-ହାସ !
ସେ ରୂପ ଲୋଡିବ ନାହିଁ ଶୃଙ୍ଗାର ରଚନା,
ସେହିର ତାପେ ନବଭାବେ ତା ପ୍ରୀତି ମୂର୍ଚ୍ଛନା;
ଜାଣେନା ଅଶଙ୍କା, ଭୀତି, ରଖିବା ଗୋପନ,
ଶତ ଘୂର୍ଣ୍ଣି-ଝଞ୍ଜା ଜାଣି କରଇ ବରଣ ।



ଜୟପୁରାଧୀଶ୍ୱର କଳା ପ୍ରପୂର୍ଣ୍ଣ ସାହିତ୍ୟ ସମ୍ରାଟ
ମହାରାଜ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା, ଡି. ଲିଟ୍.

# ସୂଚୀ

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୨୧ | ୨୨ | ଚକ୍ରବାକ | ଚକ୍ରବାଳ |
| ୭୧ | ୮ | ମୋହୁଥିଲ | ଶୋହୁଥିଲ |
| ୭୪ | ୭ | ସମାନ ପଡ଼ିବ | ସମ ନ ପଡିବ |
| ୧୦୮ | ୧୯ | ଶୃଙ୍ଗଳ | ଶୃଙ୍ଖଳ |
| ୧୧୦ | ୧୨ | ପିୟୂଷ | ପୀୟୂଷ |
| ୧୧୮ | ୯ | ଅଦେଶ | ଆଦେଶ |
| ୧୨୧ | ୧୧ | ଶରଣି | ସରଣି |
| ୧୪୪ | ୪ | ଶିରଷି | ଶିରସି |
| ୧୪୫ | ୧୧ | ବାହୁଁଥିଲ | ଲୁହୁଁଥିଲ |
| ୧୪୮ | ୧୮ | ରୁଣିତ | ରଣିତ |
| ୧୬୦ | ୧ | ଶିକତା | ସିକତା |
| ୧୭୮ | ୨୧ | ଜବେଦ୍‌ଗବ | ଜବଦ୍‌ଗବ |
| ୧୮୩ | ୧୦ | ନିରବେ | ନୀରବେ |
| ୧୮୯ | ୯ | ପ୍ରହ୍ଲକ | ପ୍ରହ୍ଲତ |
| ୨୧୭ | ୧୧ | ନିରୂପମ | ନିରୁପମ |
| ୨୧୮ | ୧୯ | ଶ୍ରୁ | ସ୍ରୁ |
| ୨୩୯ | ୧୭ | ନମି | ନମି |
| ୨୫୧ | ୪ | ଖସିପଡ଼େ | ଖସିପଡ଼େ ତୁଲ |
| ୨୫୩ | ୨୦ | ଢେଉ | ଢେନ |
| ୨୫୮ | ୨ | ବାଣି | ବାଣୀ |
| ୨୬୫ | ୧୮ | ଭୂମିର | ଭୂମିରେ |
| ୨୭୨ | ୨ | ଅନ ଯାଗର ବଦଳ | ଅନ ଯାଁ ଗରବ ଦଳ |
| ୩୦୫ | ୨ | ଯୁଗଣ | ଯୁଗଳ |

## ଉତ୍ସର୍ଗ

ଏ ଜୀବନ ପଥେ କେତେ ଜଣାଶୁଣା ଦେଖା,
ଗଲ ସେ ମରମେ ଛନ୍ଦର ତେଜ ତୋଳି,
ଏ ମୋର ଅଲୋକଲୋକର ସ୍ୱପ୍ନ ଲେଖା,
ଅରପିଲି ପଥେ ! ନାଅ ଅବା ନାହିଁ ତୋଳି ।

ଜୀବନର ପଥେ ନିମେଷ-ମିଳନ-ସାଥି !
ମୌନ ମୋ ବୀଣା, କେତେ ମତେ ଗଲ ଛୁଇଁ;
ବିହ୍ୱଳ କଲ ଭୁଲାଇଲ କାଳଗତି,
ବନ୍ଦନା ଗୀତେ ଧନ୍ୟ ହୋଇଛୁ ମୁହିଁ ।

ମଧୁର ଜ୍ୟୋସ୍ନା, ସ୍ୱପ୍ନ ଅଳସ ଆଖି;
ମଧୁର ପୀରତି କରୁଣ କାନ୍ତ ବାଣୀ,
ମଧୁର ନିମେଷ ବନ୍ଧନ ପ୍ରୀତି ରାଖି,
ଧନ୍ୟ ଏ ଭବ ଜୀବନ ପୀୟୂଷ ଖଣି ।

ଜୀବନ କ୍ଷୁବ୍ଧ ସିନ୍ଧୁ ବେଳାରେ ବୁଲି;
ଦେଖିଛୁ ଅମର ଅରୂପର ତେଜ କେତେ,
ବାସନା ମସୀରେ କଳୁଷିତ କାହିଁ ତୁଳି,
କ୍ଷମ ଅପରାଧ ମିଳିତ ମୋ ପଥେ ଯେତେ ।



# ନବ-ଯୌବନ

ମୁଁ ଗୋ, ଆସିଅଛି ନବ ଯୌବନ
ନବ ଯୌବନ !
ମୁଁ ଗୋ, ମଧୁସହଚର ଆସିଛି ଭାସି,
ଭରଅଛି କରେ କୁସୁମରାଶି,
ମୁଁ ଗୋ, ମଧୁ ଫୁଲେ ନିତ ହସଇ ରସଇ
ସ୍ୱପ୍ନେ ଭାସଇ
ସ୍ୱପ୍ନେ ଲସଇ
ସ୍ୱପ୍ନକୁ କରେ ଚୁମ୍ବନ !
ମୁଁ ଗୋ ଯୌବନ
ନବ ଯୌବନ !
ମଳୟ ତୀବ୍ର ନିଃଶ୍ୱାସ
ମୁଁ ଗୋ ନିଃଶ୍ୱାସ
ମୁଁ ଯେବେ ମଳୟ ପରଶେ ମାତଇ
ଜଗତ କହଇ
ନାହିଁ ମୋତେ ତଳେ
ବିଶ୍ୱାସ ଅଗୋ ବିଶ୍ୱାସ !
ମୁଁ ଗୋ, ମୋ ବାରତା ତାଲେ
ନୀରବ ଗାନେ,
ସକଳ ସୃଷ୍ଟି ସରଳ ପ୍ରାଣେ,
ହସାଏ ରସାଏ ପୁଣି ମୁଁ ଭସାଏ
ଅସୀମ ସ୍ୱପ୍ନେ
ଚନ୍ଦ୍ର କିରଣେ
ତଳ ତଳ ତଳ

ଜଳ ଦରପଣେ
ମୁଁ କି ନା ଜଗତବନ୍ଦନ;
ନବ ଯୌବନ
ମୁଁ ଗୋ ଯୌବନ ।

ତରଳ କାନ୍ତ ଜହ୍ନାଣିରେ
ମୁଁ ଗୋ ସ୍ବପ୍ନଟି ପରି
ଭାସିଯାଏ;
ସ୍ନିଗ୍ଧ ଲଳିତ ଅଙ୍ଗଗନ୍ଧେ
ମାତିଯାଏ ।
କିଏ ଅବା ଜାଣେ ଗଭୀର ନୀରବେ
ଢାଳଇ ଯେତେ ମୁଁ ଚୁମ୍ବନ,
ଅପେ ଝାଣ୍ଡି ପୁଣି ମତାଏ ଆନକୁ
ଯୌବନ ମୁଁ ଗୋ ଯୌବନ !

ଭେଟିଲେ ଗୋଲାପୀ ଅଞ୍ଚଳ,
ମୁଁ ଗୋ, ଶିଶୁସମ ସଦା ଚଞ୍ଚଳ,
କେଉଁ ମଳୟ ପରଶେ ତରଙ୍ଗ ବର୍ଣେ
ସେ ଅଙ୍ଗ ଉଠିଲେ ଖେଳି,
ମେଲିଦିଏ ମୋର ପ୍ରଣୟ-ପସରା
ସକଳ ଲଜ୍ଜା ଠେଲି ।
ମୁଁ ଗୋ, ଅଙ୍ଗେ ତାହାର ଲଖିଯାଏ
ମୁଁ ଗୋ, ରମଣୀୟ ମଧୁ-ଲୁଣ୍ଠିଯାଏ,
ପୁଣି ବଡ଼ ସରଧାରେ ଡାକିଯାଏ,
ଅଜ, ଆସ ଗୋ ଆସ ଗୋ ଆଦରିଣୀ ମୋର
ମଳୟେ ରଚିବା ଘର,

ମଧୁର ପ୍ରଣୟେ          ଭୁଲିଯିବା କ୍ଷଣେ
ସକଳ ଅପଣା ପର !

ସଖି ! ତୁମେ ହେବ ମୋର ନନ୍ଦନ,
ପ୍ରିୟ ନନ୍ଦନ;
ତୁମ, ମଧୁର ସ୍ୱପ୍ନେ          ବାହାରବା ସୁଖେ
ଅସିଅଛୁ ମୁଁ ଗୋ ଯୌବନ
ନବ ଯୌବନ !

ମୁଁ ଗୋ, ଚଞ୍ଚଳ ଉଠଇ          ତଟିନୀଟି ପରି
ହାସ୍ୟ ହେନାର ଛନ୍ଦେ,
ମେଘ ଚଲେ ମୁଁ          ଶୂନ୍ୟ ଗଗନେ
ଲଳିତ ମଧୁର ଛନ୍ଦେ
ସେହି ସ୍ୱରେ—
ମୋର ଅନ୍ତର
ହୁଏ ଥରହର !

ନ ଜାଣଇ ଅବା          କେଉଁ ମୋହନୀର
ମନ୍ତ୍ର ସେ ଗୋ
ମନ୍ତ୍ର !
ତହୁଁ, ଅଙ୍ଗେ ବିଜୁଳି ଚମକ ଫୁଟେ !
ବିଜୁଳି ପରି ମୁଁ ସୁରପଥ ଧରି
ଦିଗ ଦିଗନ୍ତେ ନିମେଷେ ଛୁଟେ !
ନ ମାନଇଁ ବାଧା, ବନ୍ଧ,
ସେବେ ଏ
ଚପଳ ଚିର ଅନନ୍ଦ !

ଖୋଜି ବୁଲେ କାହିଁ, କେଉଁ ରାଇଜରେ
ଅହା ସେ ଅତୁଲ ନନ୍ଦନ !
ମୁଁ ଗୋ, ଯୌବନ !

କେବେ କେବେ ମୁଁ ଗୋ    ଗୃହୁଁ ରହେ ପ୍ରିୟ
ପଲ୍ଲୀବାଳାର ହଂସ ଗତି,
କକ୍ଷେ କଳସି    ସରଳ ଗୃହିଣି !
ଠେଲିପଡ଼େ ଦେଖି ତରଳମତି ।

ସରଳ ସେନେହେ    ନିମିଷେକ ଲାଗି
ବିହ୍ୱଳ ମୁଁ ଗୋ ବିହ୍ୱଳ,
ଢାଳଇ ତା କାନେ    ତା ମରମ ବାଣୀ
ବିଦ୍ୟୁତ ଶର ଚଞ୍ଚଳ !
ଆସିଛି ଆଜି ମୁଁ ଯୌବନ,
ନବ ଯୌବନ !

ଅଙ୍ଗେ ତୋହର    ପରଶି ଦଣ୍ଡେ
ମଳୟ କରିବ ବର୍ଷଣ !
ସନ୍ଧ୍ୟା ମୋହର ସୁନ୍ଦରୀ
ତାର ପରଶେ ଉଠଇ ମାତି
ସେ ଗୋ, ମୋହ ଜରେ କେତେ ବାନ୍ଧଇ ନିତି
କୁସୁମ ଜାତକ ଜାତି
ବକୁଳ ମଲ୍ଲୀ କରବୀର
ମୋର, ଅନ୍ତର କରେ ଅସ୍ଥିର
ମୋ ଗଳା-ଭୂଷଣ    ମଲ୍ଲୀମାଳାଟି
ବକୁଳ ମୋ କରକଙ୍କଣ

ଯହିଁ ଗାଏ ଗାର        ମରମ ଦୁଆରେ
ବାଜି ଉଠେ ଖରେ,
ମଧୁ ରସଭରେ,
ବିଶ୍ୱ ଦୁଆରେ—
ଆସିଅଛି ଆଜି
ଯୌବନ ମୁଁ ଗୋ,
[୧୯୨୩]        ଯୌବନ !



## ଚିଲିକାରେ ରାତ୍ରି

ଚିଲିକାର ଶୂନ୍ୟ ପରପାରୁ
ରାତ୍ରି ଧୀର ପଦେ ଚାଲି ଆସେ,
ସ୍ନିଗ୍ଧ ସେହି ଅସ୍ପଷ୍ଟ ଅନ୍ଧାରୁ
ଶତ ସ୍ୱପ୍ନ ଗଗନେ ବିଭାସେ ।
ଗମ୍ଭୀର ତା ସୌନ୍ଦର୍ଯ୍ୟମାଧୁର୍ଯ୍ୟ
ସରଗର ସୁଧାଧାରା ସମ—
ଅଲୌକିକ, ମତେଁ ସଦା ଝୁରେ
ତାହା ଲାଗି ବ୍ୟାକୁଳ ମରମ ।
ଧୀରେ ଧୀରେ ସ୍ନିଗ୍ଧ ତେଁ ଅଞ୍ଚଳ,
ଝୁଲିଆସେ ସ୍ୱପନ ଚଞ୍ଚଳ ।
ନୀରବ ସେ ସକଳ ନୀରବ !
ନିସ୍ତବଧ ସୌନ୍ଦର୍ଯ୍ୟ ଉତ୍ସବ !

→୨

ଏ ଶୋଭାର ନାହିଁ ତ ମରଣ
ପ୍ରାଣସ୍ପର୍ଶୀ ସତ୍ୟ ସୁମଙ୍ଗଳ;
କରି ଯୁବା ଆନନ୍ଦେ ବରଣ
ଦେଇ ପ୍ରେମ ପୂତ ଅଶ୍ରୁଜଳ ।

---

## ନିର୍ଜନ ଉପବନେ

ନିର୍ଜନ ଉପବନେ ଏକାକିନୀ ଫୁଲ ଗୋ
ଭୁଲ ଚିର ସୁନ୍ଦର ନିଜରୂପେ ଭୁଲ ଗୋ ।
ନୀରବେ ରହିବ ଚୁହି,
ମୋ ଗୀତଟି ଯିବ ଗାଇ,
ବନ୍ଧୁର ପରଶେ ମୃଦୁ ସମୀରଣେ ଝୁଲ ଗୋ ।
ରୂପର ଭିଖାରୀ ମୁଁ ଗୋ
କୁସୁମରାଣି
ତୋଳି ନିତ ଗନ୍ଧେ
ଯାଏଁ ଗୋ ଭାସି ।
ନୀରବ ମୋହର ଭୋଗ,
ନୀରବେ ପରାଣ ଯୋଗ,
ରୂପେ ଛନ୍ଦେ ସୁଗନ୍ଧେ
ହରାଏଁ କୂଳ,
ରୂପସ୍ରୋତେ ମରିବାକୁ
ସଦା ଆକୁଳ ।
ମନ୍ଦେ ସମୀରେ ସହି
ଝୁଲ ଟିଗୋ ଝୁଲ ।



# ପୌଷ ପବନ

ପରଶ ପଗୁଣ ପୌଷ ପବନ
ଛିନ୍ନ କର ଏ ମରମ,
ସରଅଛେ ସବୁ ସଙ୍ଗୀତ ମୋର
ମଉଳଇ ମୋର କରମ ।
ସେଇ ଫୁଲ ପରି ପଡ଼ିବି ମଉଳି
ଶୀତଳ ଅଙ୍ଗେ ବୋଳି ଦେବ ଧୂଳି
ଝରି ପଡ଼ୁ କରୁ ଅକୁଳ ଏ ତୁଳି
ବଢ଼ଇ ଅସୀମ ଭରମ
ଛିନ୍ନ କର ଏ ମରମ ।

ସେ କାକଳି ପରି ଅସୀମ ଶୂନ୍ୟେ
ନୀରବେ ଲଭିବି ମରଣ,
ଭୁଲିବି ଯେସନେ ଭୁଲଇ ସନ୍ଧ୍ୟା
ଜନମର ସବୁ କଷଣ ।
ସୁନ୍ଦର ଏଥି କାହିଁ ନାହିଁ ମିଳେ
ସ୍ୱପ୍ନ-ପୁଲକ ନ ପରଶେ ତଳେ
ନିଃସ୍ୱ ଜନର ଅସୀମ ପିପାସା
ନିଭାଇବା ତୁମ ଧରମ,
ଛିନ୍ନ କର ଏ ମରମ ।



## ନୈରାଶ୍ୟ

ଚକଚେ, ସୁନ୍ଦର ମେଘ ମିଶୁଛି ଗଗନେ
ରହିଛି ଚାହିଁ,
ପରାଣପରଶୀ ଉଷାର ମାଧୁରୀ
ନିଭୁଛି କାହିଁ ।
ସୁନ୍ଦର ଫୁଲ ପଡ଼େ ନିତ ଝରି
କରୁଣ କଣ୍ଠେ ଗୀତ ଯାଏ ମରି
ପ୍ରାଣ-ପରକାଶୀ ପୁଲକ କାକଳି
ନାହିଁରେ ନାହିଁ
ସରବ ମଳିନ ଦିଶଇ ନିମେଷେ
ରହୁଛି ଚାହିଁ ।
ସମୀରଣ ଅଜି କଟର ନିତି ଏଥି
ହାହାକାର ,
ଉଚ୍ଛଳି ଉଠଇ ସୀମାହୀନ ବ୍ୟଥା
ଶତଧାର ।
ଅକୁଳ କଣ୍ଠେ ନ ଧରଇ ଗାନ,
ସୁନ୍ଦର ଏଥି ଚିର ଅବସାନ,
ନ ଶମଇ ଛଳେ ତରୁଣ ପିପାସା
ନିତ୍ୟ ଗାଇ,
ରହୁଛି ଚାହିଁ ।



# ସନ୍ଧ୍ୟା

ସନ୍ଧ୍ୟା ! ତବ ବ୍ୟଥାର ଦାନ
ଯାଚଇ ଅଜ ପ୍ରାଣ,
ଢାଳ ଢାଳ ଅମୃତ ସେ
ଶାନ୍ତ ଅବସାନ !
ବେଦନା ସ୍ପର୍ଶେ ମାଧବ ଶତ,
ସ୍ଫୁରିବ ପ୍ରାଣପରଶୀ ଗୀତ,
ଶୁଣିବ ଗଛ-ପତର ଲତା
ଅକୁଳେ ଡେର କାନ,
ଯାଚଇ ଅଜ ପ୍ରାଣ ।

ରକ୍ତ ନିଃସ୍ୱ ଚିର ହତାଶ
ବେଦନା ମୋର ଧନ,
ବଣ୍ଟ ସୁଖ ସ୍ୱପ୍ନ ହେଲେ
ନ ଲେଭେ କ୍ଷିପ୍ତ ମନ ।
ଦିବସ ଶେଷେ ସକଳ ଧନ,
କରୁଣ ଗୀତେ ସମର୍ପଣ—
କରିବି ସୁଖେ ଜୀବନ ପୂର୍ଣ୍ଣ
ଫୀରତ ସ୍ମୃତି ମ୍ଳାନ ।
ଶାନ୍ତ ଅବସାନ !



ଉଷା

ହତାଶ ମୁଁ ଗୋ ଜୀବନ ସାରା
ଜନମ ମୋର ବ୍ୟର୍ଥ
ଜୀବନ ଏକ ଅଶ୍ରୁ ଧାରା
ନ ବୁଝେଁ କିଛି ଅର୍ଥ ।

ଉଷା ! ଉଷା ! ନିଅ ହେ ଅଶ୍ରୁ ହାର
ନିଃସ୍ୱ ଜନ ଶତ ସମ୍ପଦ ସାର !

ଗାଇଛି କେତେ ବିକଳ ସ୍ୱରେ
ଏ ବୀଣା ମୋର ଅକୁଳ ଭରେ
କିଏ ବା ତାକୁ ଶୁଣିଛି ଥରେ ?
ପିପାସା ଆଶା ବ୍ୟର୍ଥ,
ନ ବୁଝେଁ ତେଣୁ
ଏଇ ଜୀବନ ଅର୍ଥ ।

ମୋ ଆଖି ଆଗେ ସନ୍ଧ୍ୟା ରବି
ଯାଇଛି କେତେ ବନ୍ଧୁ,
ବିକଳେ କେତେ ଡାକିଛି ତାକୁ
ମରମ କଥା କହୁ,
ଉଦ୍‌ଭ୍ରାନ୍ତ ମୁଁ ହୋଇଛି ଦେଖି
ସକଳ କର୍ମ ମୋର ଉପେଖି
ପକ୍ଷୀ ତୁଲେ ଗାଇଛି ଯେତେ
ପବନେ ଗଲା ମିଶି
ଦେଖିଛି କେତେ ନିଶି ।

ଉଷା ! ଖାଲି ଝରୁଛି ଅଶ୍ରୁଧାର
ହତାଶ ପ୍ରାଣ ଭଗ୍ନ ହାହାକାର ।
ମଉଳି ଗଲା ତୋଳିଲି ଯେତେ
ଗନ୍ଧ ଫୁଲ ସାର,
ହାସ୍ନା ହେନା ବକୁଳ ମଲ୍ଲୀ
ଚମ୍ପକର ହାର ।
ସକଳ ମୋର ମଳିନ ନାରଖାର,
ସକଳ ଗନ୍ଧେ ଭରୁଛି ହାହାକାର,
ସୌନ୍ଦର୍ଯ୍ୟ ଏ ଜୀବନେ ସଦା ବ୍ୟର୍ଥ
ଉଷା ! ଯେତେଣୁ ବୁଝିଇ ନାହିଁ
ଭଗ୍ନ ଜୀବନ ଅର୍ଥ ;
ରଚଇ କେତେ କଳ୍ପନାର •
ମୁଗ୍‌ଧ ମଧୁ ଛନ୍ଦ
ଲେଖଇ ଛବି ପରାଣ ଢାଳି
ଏ କି ହତାଶ ଗନ୍ଧ !
ସମୀର ପାଶେ କରୁଛି ବ୍ୟଙ୍ଗ
ଗଗନ କେତେ ଦେଖାଏ ରଙ୍ଗ
ଛିନ୍ନ ତୁଳି ଧୂଳିରେ ଯାଏ ଲୋଟି
ସକାଳ ନେଶ ଅନ୍ତରାଳେ
କାନ୍ଦ ଉଠେ
ଭଗ୍ନ ପ୍ରାଣ ଗୋଟି ।
ତୁମ ଅରୁଣ ଅଞ୍ଚଳେ ଗୋ
ଆବର ମୋର ତନ୍ଦ୍ରା,
ସକଳ କ୍ଷତ ନାଅ ଗୋ ହରି ମନ୍ତ୍ର ।

---

## ଅରୁଣ

ଅରୁଣି ! ଢାଳ ପରଶେ ପବିତ୍ରତା,
ନିଭି ଯାଉ ମୋ ଦୁଃଖ କ୍ଷତ ବ୍ୟଥା ।
ଆସିଛି ଅଜ ପଙ୍ଖାଳି ତନ୍ତୁ,
ସକଳ ମାୟା ତୁଟାଇ ମନ୍ତ୍ର,
ଶୁଣିବ ବସି ଅରୁଣ-ବନ୍ଧୁ
ପରାଣପ୍ରିୟ କଥା,
ଢାଳ ହେ ପବିତ୍ରତା !
କାହାର ସ୍ନିଗ୍ଧ କିରଣ ଝଟଳ
ତରଳ ଜଳ ବକ୍ଷେ ?
ପକ୍ଷୀ ଶତ ଯାନ୍ତି ଉଡ଼ି
କେଉଁ ପ୍ରିୟର ଲକ୍ଷ୍ୟେ ?
କେଉଁ ସୁନ୍ଦର ଅସୀମ ଆଶେ;
ତରଣୀ ଦୂରେ ମୁଗଧେ ଭାସେ ?
ଚୌଦଗେ କି ଶାନ୍ତ-ସ୍ୱର
ପୁଲକ ମାଦକତା !
ଅସୀମ ତେଜେ ଭସାଇ ପ୍ରାଣ
ଭୁଲିବ ସବୁ ବ୍ୟଥା ।

---

## ଛୁଟାପଦ

— ୧ —

ଉଦାସ ନୟନେ ଗୋଲାପ ରହିଛି ଚାହିଁ
ସ୍ନିଗ୍ଧ ସୋହାଗେ ଡାକିଯାଏ ଉଷା "ସହି !"
ପତର ଗହଳେ ଖଞ୍ଜନ ଉଠେ ଗାଇ,
ଅଳସ-ସ୍ୱପ୍ନେ ବେଳା ମୋର ଯାଏ ବହି ।

—୨—

ଏ ଯେ ତୁମ କ୍ଷୀଣ କଣ୍ଠସ୍ୱର
ଥର ଥର ଦୂରୁଁ ଆସେ ଭାସି !
ପିପାସାରେ ପ୍ରାଣ ଜର ଜର
ନୀରବ ଗୋ କଳପନା ରାଣି ।
ବ୍ୟଥାର କି ଅତଳ ଆନନ୍ଦ
ନୈରାଶ୍ୟର ନିଶବଦ ଶାନ୍ତି,
ଗଭୀର ସେ ସେନେହର ଛନ୍ଦ !
ସ୍ୱପ୍ନେ ଝଲେ ଅନବଦ୍ୟ କାନ୍ତି !
ସେ କ୍ଷୀଣ ସଙ୍ଗୀତେ ସେହି ସ୍ୱରେ
ମିଶୁ ଏ ମୋ କରୁଣ ଜୀବନ,
ହତାଶ ମୁଁ ଚିର ସୁଖେ ମରେଁ
ବହୁ ଶତ ବିଫଳ ସ୍ୱପନ ।



## କବି ପ୍ରେୟସୀ

—୧—

ତୁମେ, ଭାସିଯାଅ କାହିଁ ସନ୍ଧ୍ୟା ମଧୁର ସ୍ୱପନେ
ତୁମ, ମୁଖର ନୂପୁର ମନ୍ଦେ ବାଜଇ ମରମେ ।
ତୁମେ, ସେନେହ ସୋହାଗେ ଲୁହିଁ ଯାଅ,
ତୁମେ, ଆକୁଳେ ଗୀତଟି ଗାଇଯାଅ,
ମୁଁ ଗୋ, ନୀରବେ ଢାଳଇ ବ୍ୟଥାର ଅଶ୍ରୁ
ବ୍ୟଥାରେ ଅନାଏଁ ଗଗନେ,
ଭାସିଯାଅ କେଉଁ ସ୍ୱପନେ ।

ତୁମେ, ମୋହଲାଗି ସିନା ଭରିଛ ପରାଣେ
ଗଭୀର ହତାଶ ଛନ୍ଦ,
ବେଦନା ବିମଳାନନ୍ଦ,
ତେଣୁ, ନିମେଷେ ଦେଖିଲେ କରୁଣ ରୂପଟି
ଗଳାପଡ଼େ ବାଧା ବନ୍ଧ !
ଥାଅ ଥାଅ ଦୂରେ ପାଶେ ଆସ ନାହିଁ,
କରୁଣ ନୟନେ ଦୂରୁ ଯାଅ ଚାହିଁ,
ତୁମରି ଧିଆନେ ଦୁଃଖର ଗୀତ
ଗୁଞ୍ଜିବି ବସି ଜୀବନେ
ସନ୍ଧ୍ୟା ମଧୁର ସ୍ୱପନେ ।

—୨—

ତୁମେ, ନବୀନ ଉଷାର ଗୋଲାପ ଗନ୍ଧବହ,
ମୁଁ ଗୋ, ଅସୀମ ସେ ପଥେ ଅନୁଚରେ ଅହରହ,
ତରଳ ସେ ରୂପେ ହୁଏ ମୁଁ ଆତ୍ମହରା

ତୁମେ, ନିଶୀଥ ସ୍ୱପ୍ନ ! ଦିଅ ନାହିଁ ଥରେ ଧରା !
ତୁମେ, ଗନ୍ଧ-କୁସୁମ-ସୃଷ୍ଟି,
ତୁମେ, ଉଷାର ସ୍ନିଗ୍ଧ ଦୃଷ୍ଟି,
ତୁମେ, ଅମର ସ୍ୱପ୍ନାନନ୍ଦ,
ତୁମେ, ସୁପ୍ତ କବିର ଛନ୍ଦ,
ତୁମେ, ଅଧୀର ସନ୍ଧ୍ୟାତାରା,
ତୁମେ, ମଳୟ-ମଦିର-ଧାରା !
ତୁମେ, ମଧୁ ବସନ୍ତ ଚୁମ୍ବନ
ତୁମେ, ତୃଷିତ ନୟନ-ନନ୍ଦନ,

ମୁଁ ଗୋ, ପାଇ ପାଏ ନାହିଁ ପ୍ରୀତିଛଳଣା-ସୁଧା-ଅନ୍ତରେ
ତୁମେ, ବ୍ୟାପିଯାଅ କ୍ଷଣେ ଭଗ୍ନ ପରାଣ ଯନ୍ତ୍ରରେ,
ମୁଁ ଗୋ, ମୁଗ୍ଧ ନୟନେ ଆକୁଳତା ଭରି ଚାହେଁ;
ମୁଁ ଗୋ, ସନ୍ଧ୍ୟା ସମୀପେ ବିହ୍ୱଳ ଗୀତ ଗାଏ,
ତୁମେ କର କାହିଁ ମୋତେ ଅସୀମ ପଥର ଯାତ୍ରୀ
ମୁଁ ଗୋ, ସଙ୍ଗୀତ ଗାଇ ଚାଲିଥାଏଁ ଦିବା ରାତି ।

—ଗ।—

ତୁମେ, ଭାସିଯାଉଥିଲ ନୀଳ ଆକାଶର ପଥେ,
ତୁମ, କ୍ଷୀଣ କଟିତଟେ ଆବୃତ ଘନ ମେଖଳା,
ତୁମେ, ସ୍ୱପ୍ନ ଚୁମ୍ବି ହସୁଥିଲ ମନମତେ,
ଅଗୋ, ନବଯୌବନ ଅମ୍ବରେ ନବ ଚପଳା !

ଚନ୍ଦ୍ର ମନ୍ଦାର ଗୋଲାପ ଗନ୍ଧ,
କଣ୍ଠ ତରୁଣୀ ତରଳ ଛନ୍ଦ,
ଝରୁଥିଲା ଯେବେ-ସମୀର ଅନ୍ଧ
ଚୁମ୍ବି ଅଙ୍ଗ ଶର ଆନନ୍ଦ !

ହସି ଚାଲୁଥିଲ ଆପଣା ରୂପେ ନିମଗନ,
ଭୁଲି ଭୁଲି କେତେ ଦେଖୁଥିଲ ସୁଖ ସପନ !
ବକୁଳ ମଲ୍ଲୀ ହାସ୍ନା ହେନାର ସଙ୍ଗେ,
ଚହଟି ଉଠିଲେ ତରୁଣ ସ୍ୱର୍ଣ୍ଣ ରଙ୍ଗେ,
ନବ ବିଳାସିନୀ ଚାଇ ହୋଇଥିଲ ବନ୍ଦନ,
ବିହ୍ୱଳେ ଚାହିଁ ଗାଇଲି "ସ୍ୱର୍ଗ ! ନନ୍ଦନ !"

—୪—

ମଧୁର ଆଜି ଜ୍ୟୋସ୍ନା ରାତି
ପ୍ରେୟସୀ ମୋ ଆସ,
ହାସ୍ନା ହେନାର ଗନ୍ଧ-ବନେ
ଲଭିଛୁ ପ୍ରଣୟ ରସ
ଗୋଲାପ କେତେ ସ୍ୱପ୍ନ ଦେଖେ,
ବିରଲେ କବି ଛନ୍ଦ ଲେଖେ ,
ସ୍ୱପ୍ନର ଏ ସୃଷ୍ଟି ମେଳେ
ମଳୟ ମେଲେ ବାସ,
ଆସ ଗୋ ପ୍ରିୟ ଆସ ।

ଜ୍ୟୋସ୍ନା ଅଙ୍ଗେ ଢାଳିବ ବସି
ମୁଗ୍‌ଧ ତରଳ ଦୃଷ୍ଟି,
ସ୍ୱପ୍ନଭରା ଗଗନୁ ହେବ
ପ୍ରଣୟ-ଫୁଲ ବୃଷ୍ଟି ।
ସ୍ୱପ୍ନେବାଳା ଅଳସ ମୁଖେ,
ନିରେଖି ଥରେ ମରିବ ସୁଖେ,
ଜୀବନ ମୋର ପୂର୍ଣ୍ଣ ହେବ
ଦେଖି ସେ ମୃଦୁ ହାସ
ପ୍ରେୟସୀ ମୋ ଆସ ।

—୫—

ସୁନ୍ଦର ମୋର ରଞ୍ଜିତ ମେଘ
ସୁନ୍ଦର ମୋର ଗଗନ,

ସୁନ୍ଦର ନୀଳ-ସଲିଳ-ସୃଷ୍ଟି
ସୁନ୍ଦର ମୃଦୁ ପବନ ।
ସୁନ୍ଦର ଦ୍ରୁମ-ସଙ୍ଗୀତ,
ଅଗୋ, ସୁନ୍ଦର ଉଷା ଇଙ୍ଗିତ,

ସୁନ୍ଦର ମୋର ଅଲୋକେ ଖେଳଇ
ନିତ୍ୟାନନ୍ଦ ଜୀବନ
ସୁନ୍ଦର ଏଇ ଭୁବନ ।

କୁସୁମ-ବିଳାସୀ ସନ୍ଧ୍ୟା ମୋର ଗୋ
ଧୀରେ ଚଳିଅସେ ସୁନ୍ଦର,
ଲଳିତା ରଜନି ସୁନ୍ଦର ପୁଣି
ସମୀରଣ ଧୀର ମର୍ମର ।
ଦ୍ରୁମ ପାଶେ ବସି
ଲୋଡ଼ଇଁ ନାହିଁ ମୁଁ ମରଣ,
ମୁଁ ଗୋ, ଅନନ୍ଦ କରେ ଚୟନ !
ନିତ୍ୟ ନବୀନ ସୃଷ୍ଟିରେ ନିତ
ରଚଇ ମୋହର ସ୍ୱପନ !
ସୁନ୍ଦର ଅଜ ଭୁବନ !

—୬—

ଏ ଜୀବନ ଗୋଟା ଧରି ବାଜଇ ଟୋ
ବ୍ୟର୍ଥତାର କରୁଣ ରାଗିଣୀ,
ତରୁଣ ନିଃଶ୍ୱାସେ ଛନ୍ଦେ ହାହାକାରେ
ଯୌବନର ଉନ୍ମାଦନା ଜଣି ।

ଗଗନେ ପବନେ ମୋର ଭରି ହାହାକାର,
ମୋ ଲୋତକ ଭରେ ଘାସ କୁସୁମ ନୀହାର,
ଶ୍ୟାମଳ ସ୍ୱପନେ ମୋର ଝଲଇ ବେଦନା,
ବେଦନାର ସୃଷ୍ଟି ନିତ୍ୟ କରେ କଲପନା ।
ଶୁଣିବ ବେଦନା ମୋର ? ଅସ, ଅସ,
ସ୍ନିଗ୍ଧ ପଥ ରହିଛନ୍ତି ଅନାଇଁ,
ନାରେଖି ସେ ଛଳ ଛଳ ବେଳା ଅଖି
ପୁଲକେ ମୋ ଛନ୍ଦ ଯିବ ଗାଇ ।

ସଂସାର କରନ୍ତି ମୋତେ କେତେ ଉପହାସ,
ମଉନେ ସହନ୍ତି ଦୁଃଖ ପଦାଘାତ ତ୍ରାସ,
ମାତର ଗୋ ବନ୍ଧୁ ଦନ୍ତ୍ରଁ ଅଛି ଅଭିଳାଷ,
ଶୁଣିବ ମୋ ଗୀତ ତୁମେ ବ୍ୟାକୁଳ ପରାଣେ—
ଚିର ଭଗ୍ନ ଅନ୍ତରର ଭାଷ,
ଅଛି ଏକ ଦୀନ ଅଭିଳାଷ ।

ପୂର୍ଣ୍ଣ ହେବ ଜୀବନର ବିପୁଳ କ୍ରନ୍ଦନ
ବ୍ୟର୍ଥତାର ଦୂରନ୍ତ ରାଗିଣୀ,
ସେନେହେ କରିବ ଆର୍ଦ୍ର ଶତକ୍ଷତ ବ୍ୟଥା
ମାଧୁର୍ଯ୍ୟର ପ୍ରତିଦାନେ ଦୁଃଖ ନେବ କିଣି ।

— ୨ —

ଆଜ, କୁସୁମ ରାଜ୍ୟେ ଉଡ଼ିଯାଏ ମୋର ମନ,
କୁସୁମ ସ୍ୱପ୍ନ ଦେଖେଁ ବସି ଅନୁକ୍ଷଣ,
କୁସୁମ-ମଧୁ ପିଇବାକୁ ମୁଁ ଗୋ ବାଇ,
ଛୁଡ଼ଦିଅ ପ୍ରିୟ ପ୍ରଣୟେ କାର୍ଯ୍ୟ ନାହିଁ ।

କେତେ, ଗୋଲାପ ମଲ୍ଲୀ ବକୁଳ,
ନବ, ଚମ୍ପକ ହେନା ଅତୁଳ,
ମୃଦୁ, କାମିନୀ ନଅଳୀ ଗନ୍ଧ
କରେ, ରଜନୀ ଗନ୍ଧା ଅନ୍ଧ,
ମୁଁ ଗୋ, ଫୁଲ ଉପବନେ ଭ୍ରମର,
ମୁଁ ଗୋ, ପରାଗର ରାଗେ ଅମର,
ଗ୍ଲାଉଦଅ ପ୍ରିୟେ ଗ୍ଲାଉଦଅ ବେକ କର
ନଶୀଥ ସ୍ୱପ୍ନ ଭୁଲ ଆଜ କର ପର ।
କ୍ଷିପ୍ର ପ୍ରାଣର ସୀମାହୀନ ଏତେ ଆଶା,
ନାହିଁବ କାହିଁ କ୍ଷୁଦ୍ର ପ୍ରଣୟ-ଭାଷା ?
କୁସୁମ ଗନ୍ଧେ ରୁପେ ଆନନ୍ଦେ ଭାସେଁ,
ମନ ବଳେ ଆଜ ମରିବାକୁ ଫୁଲ ହାସେ,
ତୁଟାଇ ଦଅ ଗୋ ବନ୍ଧନ
ଡାକେ ମୋତେ ଦୂର ଅମରାବତୀର ନନ୍ଦନ ।

---

## ଶାରଦ ସ୍ୱର୍ଣ୍ଣ

ଅକାଶ ଅଜ ଶୁଭ୍ର ବେଶେ
ହେଲା ଚଅଳ,
ସମୀରଣେ ଖେଳି ବୁଲେ
ଏକା ଅଞ୍ଚଳ !
ଶେଫାଳିକା ଅମୃହରା,
ତାର, ଗନ୍ଧ ଚତୁର୍ଦ୍ଦିଗ ଭରା
ଅଜ ବିଶ୍ୱପ୍ରାଣ ପରଶି ଗଲା
ପୁଣ୍ୟ ମଙ୍ଗଳ !

ସେ ଯେ, କାଶ ଫୁଲେ ଭରନ୍ତି ତନୁ
ଶ୍ୟାମଳ ଶିରେ
ତାର, ମନ୍ଦହାସ ଖେଳି ବୁଲେ
ନବେ ଅସ୍ଥିରେ !
ମାଳତୀ ତାର କଙ୍କଣ,
ସ୍କନ୍ଧେ, ଅଙ୍ଗେ ଗନ୍ଧ ଚନ୍ଦନ,
ପାଗଳ ସେ ଯେ ଖେଳି ବୁଲେ
ଫାଳି ଅର୍ଗଳ ।

ଅସ ଆଜି ରୁଦ୍ଧ ଦ୍ୱାର
ମୁକ୍ତ କର ଗୋ,
ହସ ଖେଳେ ଆପଣା ପ୍ରାଣେ
ନେବା ବର ଗୋ ।
ବିଳମ୍ବ ଆଉ ନ କର ଗୋ
ନିର୍ବାଣେ ଆଉ ନ ଭର ଗୋ
ଏଇ ସମୀର ପଥ ଧରି
ଗୁଲ୍ ସର ଗୋ ।
ହସ ଖେଳେ ଆପଣା ପ୍ରାଣେ
ନେବା ବର ଗୋ ।
ବଳକା ଆଜି ମାଳ ମାଳ,
ଲକ୍ଷ୍ୟ କର ଚକ୍ରବାକ,
ଶାଆନ୍ତ ସର ସ୍ୱପ୍ନ ପର
ମୁଗ୍ଧ ବିହ୍ୱଳ,
ଆକାଶ ଆଜି ଶୁଭ୍ର ବେଶେ
ଶ୍ୟାମଳ ଚଞ୍ଚଳ ।

---

# ପ୍ରୀତି ଆବାହନ

ତୁମେ,  ବୋଲ ହୋଇ ଅସ ଅରୁଣ ଉଷାର କିରଣ
ତୁମ ପଦସଞ୍ଚାରେ ଚମକ୍କି ଗୁହେଁ ସ୍ୱପନେ
ମୁଁ ଗୋ,  ଭୁଲିଯାଏଁ ମୋର ହତାଶ ବିକଳ ଜୀବନ
ତୁମେ,  ନିତ ନିତ ମୋତେ ଡାକିନାଅ ମଧୁବ୍ରଜନେ ।

ଅସ ଅସ ମୋର ସୁଖ ଅବସାନେ,
ପ୍ରଭାତ ଗୋଲାପ ଖୋସି ବେଣୀକାନେ,
ଭାଦର ବାଦଲେ ଉଡ଼ାଇ ଅଳକ,
ଫଗୁଣ ପବନେ ଜଗାଇ ପୁଲକ,
ତୁମେ ଅସ ଧୀରେ ଅସ,
ଦେଖିଲେ ସେ ରୂପ କାହିଁ ଯାଏ ମୋର ତ୍ରାସ ।

ତୁମେ, ଶୀତଳ ଗଣ୍ଡେ ଢାଳିଯାଅ ଶତ ଚୁମ୍ବନ,
ତୁମେ, ପ୍ରଣୟର ମଦେ ଭୁଲିଯାଅ ବାଧାବନ୍ଧନ,
ତୁମେ, ଅସୀମାନନ୍ଦ ଅସୀମ ପ୍ରଣୟଭବ,
ତୁମ, ଗମ୍ଭୀର ହାସେ ମରେଁ ମୁଁ ଅତ୍ମହରା,
ମଧୁର ପ୍ରଣୟ ! ମଧୁର ସ୍ୱପ୍ନ ପ୍ରିୟା,
ଅଶେଷାନନ୍ଦ ପୁଲକି ଉଠଇ ହିୟା !
ମରଣ ! ମରଣ ! ଅସ ନାହିଁ, ରହ ଦୂରେ !
ଅଶେଷ ପ୍ରଣୟ ଉତ୍ସବ ମୋର ପୁରେ ।

[୧୯୨୪]



# ଗୋଲାପ ପିପାସା

ଏଇ ଗୋଲାପ-ପ୍ରାଣର ଅସୀମ ପିପାସା
କାହୁଁ ବା ତୁଟିବ ସୁନ୍ଦର—
ତୁମେ, ଲୁହିଯାଅ ଖାଲି ଲୁହିଁଯାଅ,
କହିବାକୁ ବ୍ୟଥା ନାହିଁ ମୋର ଭାଷା,
ନିଶୀଥ ସ୍ୱପ୍ନେ ସଞ୍ଚର—
ତୁମେ, ଗାଇଯାଅ ଖାଲି ଗାଇଯାଅ !

ଯେତେ ଏଇ ଆଖି ଭରେ ଲୁହଧାର,
ଯେତେ ଏ ପରାଣ କରେ ହାହାକାର,
ଯେତେ ପୁଣି ଶତ ବିକଳ ପରଶ,
ଜୀର୍ଣ୍ଣ ଜୀବନେ ଦୀର୍ଘଶ୍ୱାସ,
କାହିଁ, କାହିଁ ତୁମ ଅନ୍ତରେ ଥାନ ?
ଲୁହିଁଯାଅ ଖାଲି ଲୁହିଁଯାଅ;
ମୋର, ଜୀବନର ସୁଖ ଶତ ଅବସାନ !
ପାର ଯେବେ ଥରେ
କରୁଣ ରସରେ—
ଗାଇଯାଅ ଖାଲି ଗାଇଯାଅ ।

ଏ ଅଳସ ବୀଣା ତୁମକୁ ଲୁହିଁ ମୁଁ
ଲୋଟାଇ ଦେବି ଗୋ ଧୂଳିରେ
ସନ୍ଧ୍ୟା-ଚନ୍ଦ୍ର-ରୂପ-ଆନନ୍ଦ
ନ ଲେଖିବ ଏଇ ତୂଳିରେ !
ତୁମେ, ଲୁହିଁଯାଅ ଖାଲି ଲୁହିଁଯାଅ !
ତୁମ, କରୁଣ ଛନ୍ଦ ବାଇଯାଅ !

ଶୁଣିବ ! ଶୁଣିବ ଅକୁଳ ନୀରବେ,
ଶୁଣିଛ ଯେସନେ—
ଲୋତକ-ନୟନେ—
ନୀଳ ଘାସ ଫୁଲ,
ସନ୍ଧ୍ୟା ନୀରବ
ଛନ୍ଦ ଅତୁଳ,
ଶୁଣିବ ସରବ
ଗାଇଯାଅ ତୁମେ ଗୁହ୍ନିଯାଅ !
ସେଇ ସଙ୍ଗୀତ ଅଧୀରେ ଅସିଲେ ସର,
ମୁଁ ଗୋ ତୁମର ଚପଳ ଗୁହାଣିରେ ଯିବ ମର ।

---

## ବ୍ୟଥା ନିବେଦନ

ତୁମେ,କେସନେ ଜାଣିବ ଗୋ ଅସୀମ ପ୍ରୀତି ମୋର,
ଜଗାର ଏ ସେନେହ ଅଶା ପିଆସା ଘୋର?
ତୁମେ ତ ରହ କେଉଁ ଦୂରେ ଗୋ,
ସନ୍ଧ୍ୟା! ସ୍ୱପ୍ନ ସେ ପୁରେ ଗୋ ।
ମୁଁ ଗୋ ତୁମର ପଥ ଗୁହ୍ନି ଅକୁଳେ ଯାଏ ଗାଇ
ଶୟନେ ଜାଗରଣେ ଶାନ୍ତି ମିଳେ କାହିଁ ?
ନୀରବେ ମୋ ମରମେ ମରେ ଗୋ;
ତୁମ ସେନେହ ପ୍ରୀତି ଭରେ ଗୋ।
ମରମ ତଳ କଥା କେହି ତ ଜାଣେ ନାହିଁ
ଜଦାସେ ପୁଛଇ କେ 'ମଳିନ କାହିଁ ପାଇଁ ?'
ଅକୁଳ ଜୋଛନାଟି ବାଦଲ ତଳେ ଖେଳେ,
ଗୋଲାପ ପ୍ରାଣକଥା ସହେ ପବନ ମେଳେ,

କେହୁ ତ ନ ଜାଣଇ ଥରେ ଗୋ,
ଗୋପନ ପ୍ରୀତି ପ୍ରାଣେ ମରେ ଗୋ ।

ତୁମେ ଏ ପାଶେ ଗଲେ ପରାଣ ପ୍ରିୟ ଚର
ଗମ୍ଭୀର ସରମରେ ତଳକୁ କରେଁ ଶିର ।
ଆବର ଦଏ ସବୁ ବ୍ୟଥା ଗୋ,
ବିରହ ପ୍ରୀତି ମାଦକତା ଗୋ ।

ଏ ପଥେ ଗଲେ ତୁମେ ମଳୟ ବହେ ପ୍ରାଣେ,
ତୁମର ଦେହ ଗନ୍ଧ ଭାସଇ ଶତଗାନେ,
ସନ୍ଧ୍ୟା ହସେ ଖଲ ଖଲ ଗୋ
ଉଲ୍ଲସଇ ହୃଦତଳ ଗୋ,
ତୁମର ପ୍ରୀତିଲାଭ ତଲେ ତ ଅଶା ନାହିଁ
ଶୀଳ ମୁଁ ଯାଏ ଗାଇ ଗୋପନେ ରହେ ଘୁହିଁ
ସବୁଠି ଦେଖେ ତୁମ ଛା
ତୁମରଲାଗି ମୁହିଁ କାବ ଟ

ବତାସ ଯାଉ ବହୁ ବେଦନା ଯାଉ ଦହୁ,
ପରାଣ ହେଉ କ୍ଷତ ସବୁ ମୁଁ ଯିବ ସହୁ,
ମରଣ ଆଗମନେ ଛଳ ଛଳ ନୟନେ,
ସୁନୀଳ ଅକାଶକୁ ଚାହିଁବ ଥିର ମନେ,
ଶେଷ ଗୀତଟି ମୋର ଗାଇବ ଶୁଭକ୍ଷଣେ
ତୁମେ ତ ଚିରଦିନ ମୋର ଗୋ
ଛୁଡ଼ି କି ପାରେ ପ୍ରୀତି ଡୋର ଗୋ ?



[୧୯୪୨]

# ବର୍ଷା ସଙ୍ଗୀତ

ଅକାଶେ ମାତନ୍ତି ବଜ୍ର ବାଦଲ
ସାଇଁ ସାଇଁ ବହେ ପବନ;
ପୁଲକ ଉଠଇ ଚପଳା ଅଙ୍ଗେ
କି ଅବା ନବୀନ ଯୌବନ

ପ୍ରଳୟର ଏକ ଉନ୍ମାଦ ଡାକ
ଏକ ମୂର୍ଚ୍ଛନା ଥରେ ଆଖିପାଟ,
କେଉଁ ମନ୍ତୁଆଳ ଡାକେ ଆସ ଆଜି
ମୁକ୍ତ ବିଶ୍ୱ ଅଙ୍ଗନ !
ସାଇଁ ମାଇଁ ବହେ ପବନ ।

ବାହାରେ ଭିତରେ ଯୌବନ ଖେଳ
ବରଷାର ଧାରା ପ୍ରାନ୍ତରେ,—
ଛୁଟଇ ଯେସନେ ଅନନ୍ତ ଯୁବା
ନବ ଯୌବନ ମନ୍ତ୍ରରେ ।

(ମୋର) ଅବଶ ପରାଣି ନୁହେଁ ସମ୍ଭାଳି
ଉନ୍ମାଦ ଶିଖା କିଏ ଗଲା ଜାଳି !
ବରଷା ସହିତେ ଅନ୍ତର ଖେଳେ
ମୁକ୍ତ ସକଳ ବନ୍ଧନ !
ସାଇଁ ସାଇଁ ବହେ ପବନ ।

[୧୯୨୩]



# ପ୍ରଣୟୀର ସ୍ୱପ୍ନ

ଯହିଁ, ସନ୍ଧ୍ୟା ସ୍ନିଗ୍ଧ ଅଳସ ନୟନେ ଗ୍ଲହେଁ,
ଯହିଁ, ମଳୟ ଅସୀମ ପ୍ରଣୟର ଗୀତ ଗାଏ,
ଯହିଁ, ନିତ୍ୟ ନବୀନ ଯୌବନ ବୀଣା ବାଏ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗନ୍ଧ-ବକୁଳ ସମୀରଣେ ପଡ଼େ ଝରି
ଯହିଁ, ହାସ୍ନା ହେନାର ନିଃଶ୍ୱାସ ଉଠେ ଭରି
ଯହିଁ, ନିତ୍ୟ ମୁକ୍ତ ନବୀନ ପ୍ରଣୟତରୀ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ପବନେ ଗୋଲାପ ପଡ଼େ ନା ଛୁଟି ,
ଯହିଁ, ସୌରଭାକୁଳ ମାଳତୀ ମଲ୍ଲୀ ଫୁଟି,
ଯହିଁ, ନିତ୍ୟ ପ୍ରଣୟ ଷଟ୍‌ପଦ କରେ ଲୁଟି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଅକାଳରେ ହେଲେ ବହେ ନାହିଁ ଥରେ ଶୀତ,
ଯହିଁ, ପ୍ରଣୟୀ କଣ୍ଠୁ ପ୍ରଣୟିନୀ ଶୁଣେ ଗୀତ,
ଯହିଁ, ନ ଫେରଇ ଆଖି କ୍ଲାନ୍ତ ନୁହଇ ଚିତ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଶ୍ୟାମ ପ୍ରାନ୍ତରେ ଗ୍ଲହିଁ ରହେ ଘାସ ଫୁଲ,
ଯହିଁ, ପ୍ରଣୟ କଣ୍ଠେ ଉଚ୍ଛୁଳେ ତଟିନୀକୂଳ,
ଯହିଁ, ନିର୍ଜ୍ଜନ ବନେ ନିର୍ଝର ବ୍ୟଥା ଠୁଲ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସମୀରଣ ଯାଏ ଗନ୍ଧେ ପଦ୍ମଗ ବୋଳି
ଯହିଁ, ପ୍ରଣୟୀ ସଙ୍ଗତେ ପ୍ରଣୟିନୀ ଖେଳେ ଦୋଳି,
ଯହିଁ, ପାଦପ ଲତାରେ ଝୁଲଇ କୁସୁମ ଥୋଲି,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସନ୍ଧ୍ୟା ଗଗନେ ଝୁଲଇ ଇନ୍ଦ୍ରଧନୁ,
ଯହିଁ, ଭାସିଆସେ ମଧୁ କୋକିଳ କଣ୍ଠ ବନ୍ଧୁ,
ଯହିଁ, କୋମଳ ସ୍ୱରଟି ମଉଳା ନ ପଡ଼େ ମନୁ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ସ୍ୱର୍ଗ ମର୍ତ୍ତ୍ୟ ଅସୀମାନନ୍ଦେ ନନ୍ଦନ,
ଯହିଁ, ମୁକ୍ତ ପ୍ରଣୟ ମାନେ ନାହିଁ ବାଧା ବନ୍ଧନ,
ଯହିଁ, କ୍ଳାନ୍ତ ବିଷାଦ ନ ମାନି ଝରଇ କ୍ରନ୍ଦନ,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଯହିଁ, ଗଗନେ ପବନେ ଅସୀମ ସ୍ୱପ୍ନ ଭରା,
ଯହିଁ, ନାହିଁ କୋଳାହଳ ବ୍ୟଙ୍ଗ ତୀବ୍ର ଖରା,
ଯହିଁ, ମୁଗ୍ଧ ନୟନେ ପ୍ରଣୟ ଅମୃତ ଧାରା,
ଯହିଁ, ମଦଗନ୍ଧେ ଯୌବନ ଦିଏ ଧରା,
ସେ ଦେଶେ ଯିବ ମୁଁ ସେ ଦେଶେ ଯିବ ।

ଅସ ପ୍ରଣୟିନୀ ସେ ଦେଶେ ଯିବା ଗୋ ଅସ,
ତୁମ ପାଶେ ଢଳି ପିଇବି ବକୁଳ ବାସ,
ଦେଖିବା ସ୍ୱପ୍ନ ପ୍ରଣୟ ଅମର ହାସ,
ଭୁଲିବା ମରଣ ବେଦନା ବିକଳ ତ୍ରାସ !

[୧୯୨୪]



# ବନ୍ଦୀ-ସ୍ମୃତି

ଲଚ ଲଚ କାହିଁ କୋକିଲ ଉଠଇ ଗାଇ,
ମଳୟ ପବନେ ଅଜ୍ଞ ସେ ହେଲଣି ବାଇ,
ତା ପଛେ ମାତଇ ଛଇଲ କଞ୍ଜଳପାତ,
ମନେ ପଡ଼େ ମୋର କେଉଁ ସ୍ୱପ୍ନର ବାତ !

କେଉଁ ସ୍ୱପ୍ନର ସନ୍ଧ୍ୟା ମୋ ଅବସାନ,
ସେ ପ୍ରଭାତ ଲାଗି କାନ୍ଦି ଉଠେ ମୋ ପ୍ରାଣ,
ପ୍ରଣୟୀ ଯେସନେ ପ୍ରଣୟ-ସ୍ୱର୍ଣ୍ଣ ଲାଗି
ଜନନୀ ଯେସନେ ରହେ ଶିଶୁ ଲାଗି ଜାଗି ।

ମନେ ପଡ଼େ କେଉଁ ଭୀଷଣ କାନନ ଭୂଇଁ
ବଙ୍କି ସେ ପଥେ ଏକା ବୁଲିଥାଏ ମୁହିଁ,
ଲତା ନିକୁଞ୍ଜେ ମଳୟ ପହଁର ଯାଏ,
'କୁହୁ କୁହୁ କୁହୁ' ଅଥୟ କୋକିଳ ଗାଏ ।

ନିରଜନ ବନେ ରଚେ ମୋ ସ୍ୱପନ ସୃଷ୍ଟି,
ଭାସମାନ ପକ୍ଷୀ ପରାଗ ଗନ୍ଧେ ବୋଲି,
ସରଳ ସେନେହେ ଲାଗି ରହେ ମୋର ଦୃଷ୍ଟି
(କେତେ) ଶରଧାରେ ଯାଚେଁ କାନନ କୁସୁମ ତୋଳି ।

ସ୍ୱାଧୀନ ସ୍ୱପ୍ନ ସ୍ୱାଧୀନ ପ୍ରଣୟ ମୋର
ଜାଣି ନାହିଁ ଅଜ୍ଞ କାଏ ଗୋ ଉଡାଇଁ ଗଲା
ଛୁଟନ୍ତ ଜଳ୍ପ କେ ସ୍ପର୍ଶି ସେ ସ୍ୱପ୍ନ ଡୋର
କେଉଁ ସଙ୍ଗୀତ ଉଜାଡ଼ କର ମଲା !



# ପ୍ରୀତି-ଅନୁଭୂତି

ତୁମେ ମୋର ଚିର ଜୀବନ ତରୁଣ ସ୍ୱପନ,
ତୁମେ ମୋର ନବ କାବ୍ୟ ଅରୁଣ ବସନ,
ତୁମେ ମୋର ପ୍ରିୟ ବକୁଳ ମଦିର-ଗନ୍ଧ,
ତୁମେ ମୋର ନବ ଗୋଲାପ-କରୁଣାନନ୍ଦ ।

ତୁମେ ମୋ ନିତ୍ୟ କୋକିଳ କଣ୍ଠସ୍ୱର,
ତୁମେ ମୋ ସତ୍ୟ ମନୋହର ମଳୟର,
ତୁମେ ମୋ ସନ୍ଧ୍ୟା ମୁଗ୍ଧ ଅଳସ ନୟନ,
ତୁମେ ମୋ ଚିତ୍ତ କେଉଁମତେ କର ହରଣ !

ତୁମେ ମୋର ନବ ନୀରଦ ଅଙ୍ଗେ ଚପଳା,
ତୁମେ, ମଳୟ-ଅଙ୍ଗ-ମୁଗ୍ଧ-ବକୁଳ-ମେଖଳା,

ତୁମେ, ଲହରୀ ଛନ୍ଦ
ନିତ୍ୟାନନ୍ଦ,
ମୁଁ ଗୋ, ତୁମରି ସେନେହେ
ମୁଗ୍ଧ ଅନ୍ଧ,

ତୁମେ, ନବ-ଯଉବନ-ମୁକ୍ତା-ମାଣିକ-ମୋତି
ତୁମେ, କିରଣ ବର୍ଣ୍ଣେ ଦିବ୍ୟ ଅମର ଜ୍ୟୋତି !
ତୁମେ ତୃଷ୍ଣା ମରମେ ସ୍ୱର୍ଗ ଗଙ୍ଗାଧାରା,
ତୁମେ ମୋର ଦୂର ନୀଳ ଗଗନର ତାରା !

ତୁମେ, ଛଳ ଛଳ ଜୁହିଁ ମାଳତୀ ଗନ୍ଧ-ବନେ,
ପୁଣି, ଜ୍ୟୋତ୍ସ୍ନା-ସପନ-ଅମର-ସିଂହାସନେ,

ତୁମେ, କେତେ ରୂପେ ମୋର ଅନ୍ତରେ ଯାଅ ଗାଇ,
ମୁଁ ଗୋ, ମୁଗ୍ଧ ପରାଣେ ଗଗନକୁ ରହେ ଚାହିଁ !

ନାହିଁ ଅବସାଦ,
ନାହିଁ ପରମାଦ,
ସଂଶୟ, ଭୟ,
ଦ୍ୱନ୍ଦ୍ୱ ବିବାଦ,
ଅସୀମ ପ୍ରଣୟେ ଚକ୍ଷୁ ବୁଡ଼ି ଲୟ ।
ତ୍ୟାଗ ମନ୍ତ୍ରେ କରେଁ ମୁଁ ଗୋ ସବୁ ଜୟ ।
ଆସ ନାହିଁ ପଛେ ଥରେ ହେଲେ ମୋର ବାସେ,
ଆସ ନାହିଁ କେବେ ମୋ ସୁଖ-ସ୍ୱପ୍ନ ନାଶେ ।

ନୀରସ ମର୍ତ୍ତ୍ୟ ଦିଅ ନାହିଁ କେବେ ଧରା,
ମୁଁ ଗୋ, ଦୂରୁ ଥରେ ଚାହିଁ ହୋଇବି ଅପ୍ସରା ।
କଳ୍ପନାତୀତ ସୁଦୂର ସ୍ୱପ୍ନ ସ୍ୱର୍ଗ,
ଅଗୋ, ତାଳି ଯାଉ ନାଚ କରୁଣି ଛନ୍ଦ ହର୍ଷ !

୮ ମୁଁ ଗୋ, ନୀରବ ଯେତେନେହେ ଡାଳି ଦେଉଛି ଏ ମତ,
ନୀରବ ଲୋତକେ ପୀରତିର ପରଶତ !

---

## ବ୍ୟଥା-ମାଧୁରୀ

ମଳୟ ଆଜି ପ୍ରାଣେ ଦିଅଇ କେତେ ବ୍ୟଥା
ମାତର ତୁମ ବ୍ୟଥା ମଧୁର,
ଶତ ମଳୟ ରୂପେ ଏ ପଥେ ଲେ ଭୁଲି !
ଚାହିଁଛି ମୁଁ ବିରହବିଧୁର ।

ବକୁଳ ତରୁ ଶିରୁ ପଡ଼ିଲ ଝରି,
ବିଷମ ଲାଜେ ମୁଁ ଗୋ ଗଲିଟି ସରି ।
ସପନ ପରି ଆସି          ସପନେ ଗଲ ଚାଲି
ଗମ୍ଭୀର ଚେନ୍ନ ଭରି ବ୍ୟକତ
ମଧୁର ରୂପ ଗୋଟି          ଅସୀମ ଅନୁରାଗେ
ମନ୍ତୁ କି କରିପାରେଁ ତ୍ୟକତ ?
ସୁନ୍ଦର ସତ୍ୟ ପ୍ରୀତି ପାଇଛୁ ଆଜି !
ଅସୀମ ଆଶା ସ୍ୱର ଉଠଇ ବାଜି !
ମଧୁର ଏଇ ଧରା          ଭ୍ରମର ଲାଗି ଏରା
ମଧୁର ନିମେଷର ମିଳନ
ମଧୁର ଏଇ ପଥେ          ନିତି ଗୋ ନିରେଖିବା
ଅସୀମ କ୍ଷଣିକର ସପନ ।
ଯାଅ ଯାଇଛ ପୁଣି          ଆସିବ କେତେ ମତେ
ଅସୀମ ପରାଣର ଭରସା
ନୀରସ ଏ ହୃଦୟେ          ମଳୟ-ଗଗନରୁ
ବକୁଳ ଗନ୍ଧ ଟୋ ବରଷା !
ଯାଇଛ ଯାଅ କିଛୁ ଭାବନା ନାହିଁ;
ପୂର୍ଣ୍ଣ ଗୀତ ମୋର ଯିବ ଗୋ ଗାଇ ।



# ମ୍ଳାନ-ଫୁଲ

ଫୁହିଁବ ନାହିଁ ଥରେ ମଉଳି ପଡ଼େ
ମଳୟ ଉପବନ ଫୁଲଟି,
ସକଳ ତା ସୁଷମା ସକଳ ସଉରଭ
ଧୂଳିରେ ଅଜି ହୁଏ ଦଳିଛି ।
ଜୀବନେ ଅଉ କିଛି ନ ଦେବ ନାହିଁ
ଇତର ଲୋକପରି ଯାଅ ଗୋ ଫୁହିଁ ।
ସେତିକି ଏ ଜୀବନ ପାଥେୟ ତାର
ସେତିକି ଜୀବନର ଧନ ଗୋ,
ଅସୀମ ଅନ୍ଧାରେ ହତାଶ ହାହାକାରେ
ଅମର ଅଲୋକର କ୍ଷଣ ଗୋ ।
ସେତିକି ପ୍ରତିଦାନ ପାଇବ ନାହିଁ ?
ବିଫଳେ ବ୍ୟଥା ତାର ଯାଉଛି ଗାଇ ।
କାହିଁକି ଦେଖାଇଲ ସ୍ୱପନ ଲୋକ ?
ଏତେ ସେନେହ ଏତେ ପୀରତି ?
କାହିଁକି ନିଠୁର ହେ କୁସୁମ ସୁକୋମଳ
ପରାଣ ଗୋଟି ଦେଲ କରତି ?
ପ୍ରଣୟ ସୁଖ ଆଶା ତରଳ ମଧୁଭାଷା
କାହିଁକି ଢାଳିଗଲ ଯତନେ ?
କାହିଁକି, 'ଅସ ଅସ ଡାକଇ ମଧୁମାସ'
ସୋହାଗେ କହିଗଲ ଗୋପନେ ?
କାହିଁକି ସେହି ମନ୍ଦ ମଧୁର ହାସ ?
ସକଳ ପ୍ରକୃତି ଅଜି ଦିଅଇ ତ୍ରାସ

ତୁମର ପୂଜାରେ ଯେ ଅରପି ଥିଲା ମନ
ତରୁଣ ଦେହ ଯଉବନ ଗୋ,
ଫୁଲଟିଏ ଦେଲ ଥରେ ବସ୍ତଗେ ହତାଦରେ
କହିଲ "ନାହିଁ ପ୍ରୟୋଜନ" ଗୋ ।
କହିଲ ନାହିଁ ପଦେ ମଧୁର କଥା,
ଗଭୀର ବ୍ୟଥାରେ ସେ ନୋଇଁଲା ମଥା ।
ଆଜି ସେ ଅନାଦୃତ ଏକାକୀ ବନ୍ଧୁହେ
କାହିଁକି ଯେଣେ ବହେ ମଳୟ,
କାହିଁକି କଲ୍ପନା ଛଳନା ହାହାକାରେ
ଭରମେ ତୋଳେ ସୁର ନିଳୟ ?
ମୁରଲି ଯେଣେ କାମା ଯାଏ ଗୋ ଡାକି
କାହିଁକି ମରେ ପ୍ରାଣ ପ୍ରଣୟ-ଲୁଣି ?
ଝଲିଗଲାଣି ତାର ସକଳ ଗଉରବ
ଆଜି ସେ ଦୀନ ମ୍ଳାନ ପ୍ରାଣୀଟି,
ତେବେ ବିଷମ ଆଶା ଆକୁଳ କରେ
ପରଶି ପାରୁନାହିଁ ଜାଣିଠି ।
ମର୍ତ୍ତ୍ୟେ କାହିଁ ମିଶି ପାରେ ସେ ନାହିଁ
ସକଳ ପୂର୍ଣ୍ଣ ତା' ଗଲେ ଗୋ ରହିଁ !
ତୁମେ, କେସନେ ଭୁଲିଗଲ ସରଳ ପ୍ରୀତି
ଗଭୀର ଜୀବନର ଦାନ ଗୋ ।
ଲକ୍ଷ ହତାଦରେ କାହିଁ ତ ହେଲେ ଥରେ
ଭୁଲେନା ତା ମଉଳା ପ୍ରାଣ ଗୋ
ଜୀବନେ ଲୋଡ଼ା ତାର କିଛି ତ ନାହିଁ,
ଅଦୂରୁଁ ଥରେ ଖାଲି ଯାଅ ନା ରହିଁ ।



# ଗୋପ ବାଳକର ପ୍ରୀତି ଅନୁଭୂତି

ଦେଖିଲେ ଥରେ ତାର     କଜଳ କଳା ଆଖି,
ପଥିକ ପ୍ରୀତି ଫାନ୍ଦେ     ପରଣ ଯିବ ଲଖି ।
କଳା ସେ କଳା ହେଉ     ଶୋଚନା କରୁ ନାହିଁ
ମୁଁ ଗୋ ତାହାରପାଇଁ     ସେ ତ ମୋହରପାଇଁ ।

ଦେଖଇଁ ନିତି ତାକୁ     କୁଟୀର ପଥ ପାଖେ ·
ମଞ୍ଜୁ ମରାଳ ପରି     ଚଟଳ କଳସୀ କାଖେ
ଦେଖିଲେ ମୋତେ ସେ ଗୋ ଲାଜରେ ମରେ ବୁଡ଼ି
ତଳକୁ ପୋତି ମଥା     ଫେରାଇ ନିଏ ଭୁରୁ ।

ଲଳିତ ଯଉବନ     ତା ଦେହୁଁ ପଡ଼େ ଫାଟି,
ଶ୍ୟାମଳ ଶାଢ଼ୀ ଖଣ୍ଡି     ଯତନେ ପିନ୍ଧେ ଅଣ୍ଟି ।
ଚାଲିବା ପ୍ରାନ୍ତରେ ମୁଁ     ବଇଁଶୀ ଦେଲେ ବାଇ
ସକଳ ଲାଜ ତେଜି     ମୋ ପାଶେ ଆସେ ଧାଇଁ ।
ନିବିଡ଼ ଚୁମ୍ବନେ ମୁଁ     ହୃଦୟେ ଧରେ ଟାଣି,
ନୀରବ ପ୍ରୀତି ଅନ୍ତେ     ବିରହ ଦଏ ହାଣି ।

[୧୯୬୫]

---

# ଗୋପ ବାଳାର ଅଭିଯୋଗ

ତୁମକୁ ମୋହ ରାଣି     ଛାଡ଼ ପଣନ୍ତ କାନି,
ଜାଗିବେ ପୁରନାରୀ     ପାରିବେ ସବୁ ଜାଣି ।

ଛି, ଛି, ତୁମର ରୀତି     ନ ଗଲା କାଳେ କାଳେ,
ମୋ ପୋଡ଼ା କରମକୁ     ପଡ଼େଁ ମୁଁ ତୁମ ପାଳେ ।

ଦେଖିଲି ଗିରି ଶିଖରେ ମଳିନ ଶଶଧର,
ଗଲେଣି ବୁଡ଼ି, ଆଜି ନ କର ହରବର ।

ପୂରୁବ ଦିଗୁଁ ପୁଣି ସିନ୍ଦୁର ଆସେ ଫାଟି
ଶୁଭଇ ତରୁ ମେଳୁ ଖଞ୍ଜନ କାକ ପାଟି ।

ଚଳିଲା କୋଳୁଁ ଧୀରେ— ଶୀତଳ-ସମୀରଣ
ଉଠି ଆସଇ ହୁଅ କମ୍ପଇ ଘନ ଘନ ।

ଛି, ଛି, ଏ ଚୁମ୍ବନ ! ମିନତି, ଥାଉ ଥାଉ !
କପୋଳ ଅରୁଣିମା ନିଭିବ ନାହିଁ ଆଉ !

ମଳିନ କରି ଗଣ୍ଡ ଅଧର କେଶ ବେଶ,
ଚେତିବେ ଭୂପତି ନାହିଁ ତୁହିଁରି ପ୍ରୀତି ଶେଷ ।

——— [୧୯୨୫]

## କଳ୍ପନାମୟୀ

ଚିର କଳ୍ପନାମୟି !
ତୁମ, ଉଜ୍ଜ୍ୱଳ ରୂପ— ଅରୁଣ-ଆଲୋକେ
ହସିଥିଲା ମୋର ମନ୍ଦ୍ରୀ ।
ଉଜ୍ଜ୍ୱଳ ଉଷା ତରୁଣ ଜୀବନେ,
ପୁଣ୍ୟ-ତାରକା ଚପଳ ସ୍ୱପନେ,
ତୁମରି ପରଶେ ଜୀବନର ଗାଥା
ଛନ୍ଦେ ଯାଇଛୁ କହି
ଚିର କଳ୍ପନାମୟି ! ୧ ।

ରୂପର ପିପାସା     ଜଗାଇଲ ପ୍ରାଣେ
ବହ୍ନିଲ ଲେଉକଧାର !
ସ୍ୱପ୍ନମୟି ଗୋ ଚିର ସୁନ୍ଦର,
ଧନ୍ୟ କଲ ଏ ମରୁ ଅନ୍ତର,
ବୋଳଦେଲ କାହୁଁ     ମଧୁ ମଳୟର
ନବ ମଲ୍ଲିକା ବାସ,
ଦେଖିଛୁ ମନ୍ଦ ହାସ,
ଭୁଲିଛୁ ଜୀବନେ     ଶତ ବିଫଳତା!
ଭୁଲିଛୁ ଗୋ କ୍ଷତ ତ୍ରାସ । ୨ ।

ଅଟଗୋ, ଉତ୍ସବମୟି !
ମୋ ତରୁଣ ମନ     ରମ୍ୟ କାନନେ
ତୁମେ ଗୋ ସର୍ବଜୟୀ ।
ରୂପର ଅମର     ସେ ପୀୟୂଷ ମାଖି,
ଅପଲକ ମୋର     ମୁଗ୍ଧ ଏ ଆଖି,
ଧନ୍ୟ ଜୀବନ ଧନ୍ୟ ସ୍ୱପନ—
ଧନ୍ୟ କବିତା କବି,
ତୁମ ରୂପ ଛବି ଲଭି,
ମନେ ନାହିଁ ମୋର     ଦୁଃଖର ଦବା
କେସନେ ଯାଇଛି ବହି,
ଅଟଗୋ ଉତ୍ସବମୟି ! ୩ ।

ଅଟଗୋ କୌତୁକମୟି !
ହେ ଚିର ଚପଳ     ଚିର ଗୁଣ୍ଠନେ
କବି ପ୍ରାଣ ଯାଅ ଦହି ।
ସନ୍ଧ୍ୟାର ମେଘ !     ପୀରତର-ଗ୍ରାସ !
ମନ୍ଦ ସେ ହାସ     ସୁମଧୁର ପ୍ରାସ,

ସୁଦୂର ଗଗନ ଇନ୍ଦ୍ରଧନୁ ଗୋ
ପଡ଼ ନାହିଁ କେବେ ଧରା,
ତୁମଲାଗି କବି ପରା—
ଖୋଜଇ ଅକୁଳେ ପ୍ରାନ୍ତର ବନ
କ୍ଷୁବ୍‌ଧ ଅମ୍ବ-ହରା !
ଅକୁଳ ଜୀବନ ଶ୍ୟାମଳ କ୍ଷେତ୍ରେ
ଥରେ ଗୋ ମଳୟ ବନ୍ଧ,
ଲୁଚ କୌତୁକମୟି ! । ୪ ।

ହେ ଚିର ପୁଣ୍ୟମୟି !
କବି ଯୌବନେ ପୌଷ ପବନ
ଆଜି ଖରେ ଯାଏ ବହି !
ଝରେ କିଶଳୟ, ସ୍ୱପ୍ନଛନ୍ଦ,
ଶୂନ୍ୟ କାନନେ କୁସୁମ ଗନ୍ଧ,
ଶୂନ୍ୟତା ଚିର— ମନ୍ଦିରେ ଆଜି
ବେଦନା ଅଶ୍ରୁ ପୂଜା;
ରୂପ-ରହସ୍ୟ ପଡ଼େ ନାହିଁ ଜଳେ ବୁଝା !
ସବୁ ଅସ୍ଥିର, ସବୁ ନଶ୍ୱର,
ସକଳ ନମଲେ ଗୋ ତୁମେ ସୁନ୍ଦର,
ସ୍ୱଚ୍ଛ ଜୀବନ ଅରୂପ ପଦ୍ମ !
ଅତୀତର କଥା ଭୁଲି,
ଆଣିଛୁ ଅର୍ଘ୍ୟଥାଳି,
ସ୍ୱପ୍ନଲୋକର ଅଶ୍ରୁ ହାସ୍ୟ
କହ ନେବ ଅବା ନାହିଁ ?
ଅଗୋ କଳ୍ପନାମୟି !



# ଅରୂପ-କୁସୁମ

ଆଜ ଇନ୍ଦ୍ରଧନୁର ସପ୍ତରଙ୍ଗେ
ତୁମର ରୂପ ଝଲିଲା
ଅରୂପ କୁସୁମ ତୋଳିବାକୁ
ମନ ବଳିଲା ।
ଝରେ ଝର ଝର ବର୍ଷା ବିନ୍ଦୁ,
ଉଛୁଳେ ପୀରତି କନକ ସିନ୍ଧୁ,
ଆଜ ନାହିଁ ମୋର ଭାଷା କେସନେ ସଜାଣି
କହିବି ପୀରତି କଲିଲା ।
ଅସୀମ ପିପାସା ! ଆକାଶ କୁସୁମ
ତୋଳିବାକୁ ମନ ବଳିଲା ।

ତୁମର ବିରହେ ସୃଷ୍ଟି ଆଲୋକେ
ଅମୃତ ଆଶା ଖେଳେ !
ଆଗୋ, ମଧୁର ବର୍ଷା ମେଳେ !
ମୁଁ ଗୋ, ବନବିହଙ୍ଗ ଏକା ଏ କୁଟୀରେ
ଧରେ ତାନ ଅବହେଳେ !
ସେ ଗୋ, ମେଘ ମହ୍ଲାର ଅବା ଜାଣେ ନାହିଁ,
ତୁମର ସେ ନାମ ବିହ୍ୱଳେ ଗାଇ,
ନିମୀଳିତ ଆଖି ଦେଖଇଁ ଗଗନେ—
ଭୁବନ ଧୈର୍ଯ୍ୟ ଟଳିଲା,
ଅପରୂପ ରୂପ ପାଦପ
ଲତାରେ ଝଲିଲା !



# ଉଷାଲୋକେ

ଅଳସ ଉଷାର     ଅଲୋକେ ଝଲଇ
କାହାର କନକ ଅଙ୍ଗ;
କ୍ଳାନ୍ତ ପରାଣ ସେ ରୂପେ
ରହିଲା ଲଗି !

ଆପେ ଆପେ ଖସି     ସବୁ ବନ୍ଧନ,
ସକଳ ଦୈନ୍ୟ     ଗ୍ଳାନି କ୍ରନ୍ଦନ,
ଗଳିଗଲା ଧୀରେ ଯେସନ ନୀହାର
କି ପୀରତି ସୁଧା ଲୁଣ୍ଠି !
ତାହାର କନକ ଅଙ୍ଗ ।

ସେତ, କ୍ଷଣିକର ଆଶା, ସେନେହ, ପୀରତି,
କ୍ଷଣିକ ସ୍ୱପନ ମାୟା,
ମୋର, ବିକଳ ପରାଣ ଖୋଜି ବୁଲେ ସେହି
ଅକୁଳ ନୟନ ଛାୟା !

ସେହି, ତରୁଣ ପରାଣ କରିବାକୁ ପାନ
ଦିବା ନିଶି ତୋଳେ ମୋ କରୁଣ ଗାନ,
(ମୁଁ ଗୋ) ପୂର୍ଣ୍ଣ କରିବି   ସେ ଅଲୋକ ତେଜେ
ଜୀବନେ ରହେ ଯା ବାକି,
ରୂପ ପାରାବାରେ
ସେ ପୀରତି ସୁଧା ଲୁଣ୍ଠି ।



## ରୂପଲହରୀ

ଭୁବନେ ଖେଳଇ ରୂପର ଲହରୀ
ଗଗନୁ ଝରଇ ଅରୂପ ମଧୁ;
ସବୁ କଥା ଭୁଲି ଆସ ଏ ବିଜନେ
ପିଇବା ବସି ଗୋ ଜୀବନ ବନ୍ଧୁ।
ଯାଏ ଯୌବନ କେତେ କଥା ଭୁଲି,
ପୂରେ ନାହିଁ ଦନେ ରକ୍ତ ଏ ଥାଳି,
"ସଫଳ କର ତୋ ଜନମ !" ଡାକଇ
ନଦୀ ଅରପାରୁ ଚକୋର ବଧୂ;
ସନ୍ଧ୍ୟାରୁ ଝରେ ଅରୂପ ମଧୁ।

ଅସୀମ ଏ ରୂପ ସତ୍ୟ ନିତ୍ୟ,
ମିଥ୍ୟା ସକଳ ସପନ;
ଜୀବନର ବ୍ୟଥା କ୍ରନ୍ଦନ ଭୁଲି
ଯଜନା କରିବା ବରଣ।
କାହା ରୂପେ କହ ବିଭୋର ସନ୍ଧ୍ୟା,
ବକୁଳ ମଲ୍ଲୀ ରଜନୀଗନ୍ଧା ?
କାହା ରୂପେ ବାଇ ଆଜି ଏ କୋକିଳ
ଗାଇଯାଏ ଗୀତ ଅଶାର ଛନ୍ଦ,
ଭୁବନେ ଖେଳଇ ରୂପର ଲହରୀ
ଗଗନୁ ଝରଇ ଅରୂପ ମଧୁ।



# ନବ ବର୍ଷାନୁଭୂତି

ନବୀନ ବରଷାରେ ତୁମର ଅନୁଭବ ମଧୁର,
ମଧୁର ପୁଣି ସ୍ୱରସୋହାଗୀ ଏ ଗୀତକ ବଧୂର ।
ମଧୁର ମନ ମତେ,
ଏ ବାତାୟନ-ପଥେ—
ଗୁହାଁବା ଦୂରପଥ ବଧୂର,
ତୁମର ଅନୁଭବ ମଧୁର !

ବରଷା ଝର ଝର ଘନ ତମିର ନଭୁଁ ଝରଇ,
କେତେ ବାସନା ଜାଗି ତରୁଣ ମରମରେ ମରଇ !
ସମୀର ଅବିରଳ,
ହସଇ ଖଳ ଖଳ,
ନବୀନ ପ୍ରୀତିସମ ଥରଇ !
ବାସନା ମରମରେ ମରଇ ।

ପୀରତି-ବେଦନା-ପ୍ରାଣ ବରଷା କୋଳେ ଏକ କର ଗୋ,
କୁଟୀରେ ବସି ବସି ବେଦନା ନୟନେ ନୀର ଭର ଗୋ,
ବରଷା ଅନୁଭବ,
କବିତା ନବ ନବ,
ବିରଚି ଗଲେ ସହଚର ଗୋ,
ଭାଲେଁ ସାଜନ୍ତୁ ଯନୁ କର ଗୋ ।

ସେନେହ-ସିକ୍ତ ନେତ୍ରେ ଦେଖନ୍ତୁ ଚପଳାର ଚଳଣି,
ଅନ୍ଧାର ମେଘ କୋଳେ ଯୁଗଳ ପ୍ରାଣ ଏକ ସଜନୀ,

ଭୁଲି ସଂସାର ମାୟା,
ବେଦନା ଦୁଃଖ ଛାୟା,
ତରୁଣୀ-ପୀରତିର-ବରଣ-ସୁଖ-ଭୋଗ, ସଜନି !
ବଂଶୀ ସମୀରଣେ ଯେସନ ସ୍ୱପ୍ନାବେଶେ ରଜନୀ ।



## ଅଭିସାର-ସ୍ମୃତି

ସେ ତ ଆସିଥିଲା ଦିନେ ଏମନ ନୀରବ ରାତିରେ,
ମୋର ତରୁଣ ମନଟି ଅଧୀରେ ଉଠିଲା ମାତିରେ ।
ଆସିଲା ଯେସନେ ନିଶାର ସପନ,
ଲୋତକଝୁରିତ କଜଳ ନୟନ,
ସେ ବା, ମଳିନ-ମଳୟ-କୁସୁମ-ବେଦନା
ବହି ଆଣିଥିଲା ଛାତିରେ,
ଆସିଥିଲା ଦିନେ
ଗଭୀର ନୀରବ ରାତିରେ ॥

କେଉଁ ବିରହୀର ରୁଦ୍ଧ ଦୁଆରେ
ଡାକିଲା ଚକୋର ଭିଖାରୀ,
ଅବୋଧ କଜଳପାତି କାହା ପାଶେ
ଘନ ଘନ କଲା ଗୁହାରି ?
ବିକଳ ଜୋଛନା ! ଗାଇଲା ସେ ଗୀତ,
କୋମଳ ହୃଦୟ ହେଲା ତା ଅଧୀର,
କହିଲା···"କିବା ତୋ ଗାଇବି କି ଥରେ
ବେଦନାର ରାଗ କିଛିରେ
ଆଜି ଏ ଗଭୀର ରାତିରେ ?"

ଛୁଇଁଲି ବୀଣାର କରୁଣ ତାରଟି
ଝରିଲା ଗଗନୁ ଲୋତକ,
ବସିଥିଲା ପାଶେ ପାଷାଣୀ ସମୀରେ
ଉଡୁଥିଲା ତାର ଅଳକ ।
ଥିର ହେଲା ଗୀତ କରି ହାହାକାର !
କଣ୍ଠହାର ସେ ଦେଲା ଉପହାର,
ଶୂନ୍ୟେ ମିଶିଲା ହତାଶ ଯେସନେ
ଚିର କଳ୍ପନା ସାଥିରେ !
ଆସିଥିଲା ପାଶେ
ଗମ୍ଭୀର ନୀରବ ରାତରେ !



## ନବ ବର୍ଷା ସଙ୍ଗୀତ

ପାଗଳେ କଲଣି ନବୀନ ବର୍ଷା
ଭକ୍ତ ମନ !
ମଳୟ ଯେସନେ ଜୋଛନା ରାତେ
କୁସୁମ ବନ !
କ୍ଲାନ୍ତ ନୟନେ ଦୂରେ ନିରେଖିବା
ମିଥ୍ୟା ! ସତ୍ୟ ଖାଲି ଭାସିଯିବା !
କ୍ଷିପ୍ର ପାଗଳ ସମୀରଣ ଭୁଲେ !
ଡାକୁଛୁ ଧନ,
ଉପେକ୍ଷା କରି ବିଷାଦ କ୍ଲାନ୍ତ
ଭକ୍ତ ମନ !

ଦଳିତ ପଲ୍ଲବି, ଯୌବନ ମୋର,
ଗାଅ ରେ ଆଜ !
ଯୌବନ ମୁହିଁ ନିତ୍ୟ ଅମର !
ଜରାପଦେ ମୁଁ କି ପଡ଼ିବି ଆଜ ?
ଜୀବନ କାହିଁରେ ଜୀବନ କାହିଁ ?
ଏ ଭୁବନ ତଳେ,
ବଜ୍ର ବାଦଲେ,
କହ କାହିଁ ଥିଲେ,
ସେ ଆଲୋକ ମିଳେ ?
ଚିର ଆନନ୍ଦ, ଜୀବନ କାହିଁ ?
ଭୁଲି କଳ୍ପନା ପବନ ସହିତେ
ଏଇ ମୃତ ଦେଶେ,
ଜୀବନ ନାହିଁ ଗୋ,
ଜୀବନ ନାହିଁ ।
ଗାଅ ଗୋ ଦଳିତ ବୃକ୍ଷ ଲତିକା
ନଦୀ ପର୍ବତ ପୁଲକ ପ୍ରାଣେ,
ବର୍ଷା ଆସିଛି ବିଶ୍ୱେ ଆଜ ରେ
ଆସିଛି ଆସାର କବିର ଗାନେ ।
ଗୋଲାପ ପ୍ରାଣର ଗୁହିଁରୁ କି ଥରେ
ମଳିନ କ୍ଲାନ୍ତ ନୟନ ମେଲି ?
କବିତା ରସିକ ହାସ୍ନା ହେନାର
ଦୁଆରେ ବର୍ଷା କରଇ କେଳି !
ଖେଳେ ସେ ଗଗନେ ପବନେ ଆଜ,
କବିତା ଛନ୍ଦେ ପଡ଼ଇ ବାଜ,

ସ୍ୱପ୍ନ-ବକ୍ଷେର ଧରଣୀ ଗନ୍ଧେ
ରସିକ୍ତ ଆଜ !
ବିଶ୍ୱ ମୁକ୍ତ ସକଳ ରନ୍ଧ୍ରେ,
ନବ ଆନନ୍ଦେ,
ଅମରର ଗୀତ
ଉଠଇ ବାଜ !
ସକଳ କଣ୍ଠେ ଜୀବନ ! ଜୀବନ !
ଅସୀମ ପୀରତି କାହିଁ !
ବନ୍ଧନ ସବୁ ମୁକ୍ତ କର ଗୋ
ଦୂରଦେଶେ ଯିବା ଧାଇଁ !
ବିଶ୍ୱ ତନ୍ତ୍ର ଏକଇ ଛନ୍ଦ,
ଏକଇ ପୁଲକ, ପ୍ରୀତି ଆନନ୍ଦ;
ଶୁଣ ଶୁଣ କବି ମୂର୍ଖ, ଅନ୍ଧ !
ଏକଇ ପାଗଲ ଦଳେ,
କାହାର ସ୍ୱପ୍ନ କ୍ଷିପ୍ର ସ୍ୱରଟି
ଧାନ୍ଦ ବାଦଲେ ମିଶେ !
ସଙ୍ଗୀତ ମେଳେ ପୀରତିର ମେଳେ
କବିତାର ଅନୁଭବ,
ଆରେ ବର୍ଷାର ଉତ୍ସବ !
କୋଳାହଳ ଭେଦ ଉଠଇ ଗଗନେ
ପିପାସା ଆଶାର ରବ ।
ଗାଅ ଗାଅ କବି ଜୀବନର ଗୀତ,
ଆନନ୍ଦ କର କର ଗୋ ଚକିତ,
ପ୍ରେୟସୀ ଅଜ ଢାଳଦଏ ତାର
ସକଳ ଧନ !
ନବ ବର୍ଷାରେ ନବ-ଆନନ୍ଦ-
ନିମନ୍ତ୍ରଣ !



# ଅନୁଶୋଚନା

ପାଚଶୋରିବ ବୋଲ ବିଫଳ ଜୀବନେ
ଭୁଲଇଁ ଥରକୁ ଥର,
କାହିଁ ପାଇଁ ପୁଣି ଯଉବନେ ବାଜେ
ଗଭୀର କରୁଣ ସ୍ୱର !

କାହିଁକ ଗଗନେ ହସଇ ସନ୍ଧ୍ୟା,
ଫୁଟଇ ମଲ୍ଲୀ ରଜନୀଗନ୍ଧା,
ମୁଁ ହେ, ଶୂନ୍ୟତା ମେଲେ ରଚିବ ସ୍ୱପ୍ନ
ନିତ ନିତ ପ୍ରୀତି ଭର !
ପାଶୋରିବ ବୋଲି
ଭୁଲଇଁ ଥରକୁ ଥର ।

ମୁଁ ହେ, ଶ୍ରାବଣ ରଜନୀ ସ୍ପର୍ଶେ ହୃଦୟ
କରିବ ଅଶ୍ରୁସିକ୍ତ,
କ୍ଷିପ୍ର ସମୀରେ ଚପଳା ହାସ୍ୟେ
କହିବ "ରିକ୍ତ ରିକ୍ତ !"
ଜୀବନରେ ଯାହା ନୁହଁଇ ହେବାର
ବିଫଳ ତା ଲଗି ଏତେ ହାହାକାର
ହତାଶର ଗୀତେ ପୂର୍ଣ୍ଣ ଜୀବନ !
ସେ ଅଶାନ୍ତି ମନୋହର !
ପାଶୋରିବ ବୋଲି
ଭୁଲଇଁ ଥରକୁ ଥର !



# ବିଦେଶିନୀ

ଶାନ୍ତ ସନ୍ଧ୍ୟା    ହସଇ ମଧୁରେ
    ମୁକ୍ତ ନୀରବ ସରଣୀ
ବିଦେଶିନୀ ଆଗୋ   ମେଲି ଦିଅ
    ତବ ତରଣୀ ।

ଯୌବନର ଏ ମଧୁର ଯାତ୍ରା !
ପରଶଇ ନାହିଁ ବିଷାଦ ମାତ୍ରା !
ମହିଁ ଅଭିଳାଷ   ମୌନେ ଚଲ ଗୋ
ହସଇ ବିଭୋର ଅବନୀ ।
ମେଲି ଦିଅ ତବ ତରଣୀ ।

ନବ ଯୌବନ   ଫାଟି ପଡ଼େ ଯହିଁ
    ଆଜି ଏ ମୁଗ୍‌ଧ ସନ୍ଧ୍ୟାରେ,
        ଯେସନ ଗନ୍ଧ—
    ମଲ୍ଲୀ ରଜନୀଗନ୍ଧାରେ !
ମୁଁ ଗୋ, ଭୁଲି ଆପଣାକୁ   ପିଏଁ ସେହି ସୁଧା
    ନୀରବେ ବସି ଏ ଅନ୍ଧାରେ ।
 ହେ ଅପରିଚିତା ! ବିଦେଶିନି
(ତୁମେ) ସ୍ୱପ୍ନ ? ସତ୍ୟ ? ମାୟାବିନୀ ?
(ମୋର) ଅନ୍ତର ମନ      ଗାଉଛି ଅଧୀରେ
        ତୁମରି ମଧୁର ଆଗମନୀ !
        ମନ୍ଦ ମଧୁର ସୁରଧୁନୀ,
        ତୁମେ ମାୟାବିନୀ !

ଝଲଇ ମଧୁରେ          କୋମଳ କପୋଳେ
ଅସ୍ତ ରବିର ଚୁମ୍ବନ;
ନିମୀଳିତ ଅଖି          ଅମୃତ ହାସ
ପଶିଣି ଅବା କି ସ୍ତମ୍ଭନ !
ସେଇ ହାସେ ପ୍ରାଣ ଭସାଇବାପାଇଁ,
ଅକୂଳ ଗଗନ ସମୀରଣ ବାଇ,
ପକ୍ଷିକଣ୍ଠୁ ଝରେ ଉଠେ ଗାଇ
ଅଧୀରେ ଆସଇ ରଜନୀ
ମେଲିଦଅ ଘୁମ ଓଢଣୀ !

ସମୀରେ ଦୋଳଇ          କବରୀ, ଅଙ୍ଗେ
ରହେ ନାହିଁ ନୀଳ ଅଞ୍ଚଳ,
ତରୁଣୀ ରୂପର          ନିମେଷ ସ୍ପର୍ଶେ
ଏକଲା ବିଶ୍ୱ ଚଞ୍ଚଳ !
ଚଞ୍ଚଳ ପ୍ରାଣ          ଯେସନେ ଚପଳା
ଗମ୍ଭୀରେ ଚଳେ          ମାତର ସରଳା
ତରୁଣୀ କମଳ          ବନେ ମୋ କମଳା
ଚାଲ ଗୋ କନକବରଣି !
ମାଡ଼ିଆସେ ଭୀମ ରଜନୀ !

ଗାଇବି ବସି ମୁଁ —          ମୁଗ୍ଧ ସ୍ୱପ୍ନେ ?
ଛନ୍ଦ ହୃଦର ସ୍ଫୁରଣି,
ଅଙ୍କାଠେ କରୁଁ          ଖସିଛୁ ଯନ୍ତ୍ର
ଛବିଛ ଏ ମନ ହରଣି ।
କୋମଳ ଅଙ୍ଗ କୁସୁମ ଗନ୍ଧେ
ମୁଗ୍ଧ ପଶିଣି ସ୍ତମ୍ଭିତ ।

ଝୁନ୍ତୁ ମୋ ମନ-ମଳିନ-ଗଗନ

ସ୍ୱପ୍ନେ ହେଲଣି ରଞ୍ଜିତ।

ଆଜ ନୁହେଁ ଗୀତ ! ରୂପ ପାରାବାରେ

ଯୌବନ ଅରପଣ ।

ଆଜ ଦେବା ଖାଲି ମୁକ୍ତ ପରାଣେ

ସଞ୍ଚିତ ସବୁ ଧନ !

ନାଅ ନାଅ ତୁମେ ତରୀ ଧୀରେ ବହି,

ସ୍ୱପ୍ନସାଗରେ ବନ୍ଧିଲେ ସହି,

ଖସିପଡ଼େ କାନ୍ଥ     କୁସୁମଟି ଧୀରେ

ଖୋଜି ଦେବ ଅଗୋ ରମଣି ?

ଝୁଲି ଝୁଲି ଦୂରେ

ଆସଇ ଚନ୍ଦ୍ର ରଜନୀ !



## ଅଶ୍ରୁ ଉପହାର

ନିତ ନିତ ବସି ତୁମର ବିରହ

ଅଶ୍ରୁରେ ରଚେଁ ହାର,

ଏତିକି ମୋହର ଜୀବନର ତୁଲେ

ଅନ୍ତିମ ଉପହାର ।

ପାଇ ନାହିଁ ଅଉ କିଛି ତ ଜୀବନେ,

ଭରମିଛି କେତେ ତରୁଣ ସପନେ,

ସକଳ ହର୍ଷେ     ସୁଖ-ଆନନ୍ଦେ

ବାଜି ଉଠେ ହାହାକାର !

ଅଶ୍ରୁରେ ରଚେଁ ହାର ।

ଏକଇ ଜୀବନ ବିଫଳ ଗୋ ମୋର
ତହିଁ କାର ଲଭ ହାନି ?
ମୁଁ ତ, ତୁଟାଇ ଦେଇଛି ସକଳ ମମତା
ଶୁଣିବି ବୋଲି ସେ ବାଣୀ ।

ମୁକ୍ତ ପରାଣେ ବଢ଼ାଏ ମୋ କର,
କହେ ପ୍ରିୟତମ ଧର ଧୀରେ ଧର !
ଜୀବନର ଚିର କଣ୍ଟକ-ପଥେ
ଛିଡ଼ିଯାଏ କ୍ଷୀଣ ତାର,
ଅଶ୍ରୁରେ ରଚେଁ ହାର !
(ସମାଧି-ସ୍ମୃତି)

[୧୯୨୪]



## ପ୍ରଶ୍ନ

ଜୀବନଟା କି ଖାଲି ଅକୁଳ ନୟନରେ
ଚାହିଁବା ?
କୁଟୀରେ ଏକା ବସି ଉଦାସ ଗୀତ ନିତ
ଗାଇବା ?
ପାଗଳ ବେଶ ସାଜି,
ଛିନ୍ନ ଘନ ଆଜି
ଉଦାସେ କହି ଯାଏ ଯାହାକୁ ଖୋଜି
ସେ ତୋ କାହିଁ ବା ?
ସକଳ ଭୁଲି ଆସ ପାଗଳ ଗୀତ ଆଜି
ଗାଇବା ।

ସୁଦୂର ଅତୀତରେ ଭରମ ହେଲ
ଥରେ ଜୀବନ୍ତର୍
ଆଉ କି ନ ଫେରିବ ଶାନ୍ତ ସୁଖ
କ୍ଷଣ-ସପନେ ?
ଦଳିତ ଏ ପରାଣେ ସେ କର ଯିବ ନାହିଁ
ପରଶି ?
ଦହନେ କି ସୁଶୀତଳ ବାଦଲ ଯିବ ନାହିଁ
ବରଷି ?
ସଞ୍ଚିତ ଅଖି ଜଳ,
ତହିଁ କି ନାହିଁ ଫଳ ?
ସୁଖର ଆଶା ଭରି ପ୍ରିୟର ଅନୁରୂପ
ଧ୍ୟାଇବା ?
ଜୀବନଟା କି ଖାଲି ଆକୁଳ ନୟନରେ
ଗୁହାଁବା ?

—୧୯୨୫— (ସମାପ୍ତ-ସ୍ମୃତି)



# ମୁକ୍ତ ସେନା

ମୁକ୍ତ ସେନା ! ମୁକ୍ତ ସେନା !
ଦୁଃଖ କି ଭାଇ ? କି ଅବା ଭୟ ?
ନାୟକ ତୋହର ଅନ୍ତର ଶର
କରିଲ ମୃତ୍ୟୁ କରିଛୁ ଜୟ ?
ଗର୍ବେ ନିଶାଣ ଅଜି ତୋଲି ଧର !
ମୃତ୍ୟୁ ଦୁଃଖେ ଫୁତ୍କାର କର !

ପୋଛ ଯେ ଅଶ୍ରୁ ଅଟ୍ଟହାସେ୍ୟ
ମିଳିତ କର ତୋ ଶକ୍ତିଚୟ;
•ଭୈରବେ ଗାଅ, ଗମ୍ଭୀରେ ଗାଅ,
ସତ୍ୟକୁ କିଏ କରିବ ଜୟ ?
ନାହିଁରେ ଭୟ !
ତୋହର ତ୍ୟାଗରେ ଭସ୍ମ ଉପରେ
ଉଡ଼ିବ ସତ୍ୟ ଧ୍ୱଜା !
ଅରେ, ଭୈରବ ଭେରୀ ବଜା !
କମ୍ପି ଉଠୁ ଯେ ଶୀତଳ ରକ୍ତ
କମ୍ପୁ ମିଥ୍ୟା ମଜ୍ଜା ।
କହ କହ ନତ ନ କରିବୁଁ ଶିର
ଦେବୁଁରେ ରକ୍ତ ନୟନର ନୀର
ନ ଟଳିବ ପାଦ ମୁକ୍ତି ମାର୍ଗୁ
ନ ଟଳିବ କେବେ ଲକ୍ଷ୍ୟ ଲୟ;
ସତ୍ୟକୁ କିଏ କରିବ ଜୟ ?



## ସ୍ମୃତି

୧—ସେ ତ, ଚପଳା ସହିତେ ଗଲଣି ବାଦଲେ ଲେଟି,
ଆଜି, ଦେଖୁଛୁ ତା କ୍ଷୀଣ ଉଜ୍ଜ୍ୱଳ ତନୁ ଗୋଟି ।
ଗଣ୍ଡେ ତାହାର ଚୁମ୍ବନ ଦାଗ
ଫୁଟିଥିଲ ପଛେ ନବ ଅନୁରାଗ
ପ୍ରଣୟ ପାଗଳ କାହାର ସେ ରୂପ ? ବନ୍ଦୀ ତା ମରମଟି !
ଦେଖୁଛୁ ତା କ୍ଷୀଣ ଉଜ୍ଜ୍ୱଳ ତନୁ ଗୋଟି ।

ଖେଳାଇ ପବନେ ଲୁପ୍ତ ଅଶାନ୍ତି
ସେଇ ଦୂର ଅତୀତର;
ନବ ଯୌବନେ ବାଜଥିଲ ଯେବେ
ମିଳନ ମଧୁର ସ୍ୱର !
ନାହିଁ, ନାହିଁ, ସେ ତ ନୁହେଁ ପାଇବାର !
ଖାଲି ଗାଇବାର, ଖାଲି ଝୁରିବାର,
ନ ଝୁରି ଉଦାସେ ଲଭିଲ ସଫଳ
ଜୀବନ ପୂର୍ଣ୍ଣ କୋଟି;
ଦେଖିଛୁ ଥରେ ତା ଉଜ୍ଜ୍ୱଳ ତନୁ ଗୋଟି ।



୨— ଶ୍ରାବଣ ମେଘ ଆଜ କ୍ଷିପ୍ର ପର ଦୂରେ
ଯାଉଛୁ ଧାଇଁ,
ସକଳ କଥା ଭୁଲି ଦୁଆର ପାଶେ ସେ ତ
ଥିବ ରେ ଚାହିଁ !
ଲୋତକ ଛଳ ଛଳ, ପୃଷ୍ଠେ ଲୋଟୁଥିବ
ଅଯତ୍ନ ଗନ୍ତ୍ରି
ଘନ କାଳିମାବୃତ, ଉଜ୍ଜ୍ୱଳ ସଦ୍ୟ ସ୍ଫୁଟେ—
ଯୌବନ ଅବା !
ଶ୍ରବଣ ଖସିଥିବ କନକ ଅବତଂଶ
ବଳୟ କରୁ,
ତରୁଣ ହୃଦୟୁଁ ପାଲଟି ଥିବ ପୁଣି
ନିଦାଘ ମରୁ !

ପେଶଲ କଟି ତାର ସ୍ତନ ଜଘନ ଭାର
ନ ପାର ସହି
ବାତାୟନ ସମୀପେ ଲତିକା ସମ ପଡ଼ି
ଥିବ ସେ ଲଇଁ ।

ଅବା ସେ ଭାବୁଥିବ ଜୀବନ କଥା ତାର
ନୟନ ବୁଜି,
କବି ତୋ କଲପନା ପ୍ରଖର ହେଲେ ଅବା
ପାରିବୁ ବୁଝି ।
ବରଷା ଆଜି ନବ ତରୁଣୀ ପ୍ରାଣେ ଯେତେ
ଲଗାଏ ବ୍ୟଥା,
ସବୁ ସେ ସହୁଥିବ ସରଗ ଶଶୀ ସମ
ସରମନତା ।

ପରାଣି ସହଚରୀ ନାହିଁ ତା ପାଶେ କେହି
କହିବ ଧୀରେ
କୋମଳ କଥା ମନ୍ଦେ—କପୋଳୁ ପୋଛିବୁ ତୁ
ଲୋତକ କି ରେ ?
ନୁହେଁ ସେ ଆନ ଜନ, ଯଉବନର ତୋର
ଉଜ୍ଜ୍ୱଳ ମଣି
ତୋହର ପ୍ରିୟ ସେ ତ ମାନସେ ପରମାଦ
କାହିଁକି ଗଣି ?

କରୁ ସେ ଅବହେଳା ଫେରାଇ ନେଉ ମୁଖ
ତୋହର କଥା
ନ ଥାଉ ପ୍ରାଣେ ତାର ସଫଳ ହେଉପଛେ
ତୋ ଆକୁଳତା ।

ତା ଶୁଭ କଲପନା ତାହାର ସୁଖ ଚିନ୍ତା
କି ଦୋଷ ସେଥି ?
ନିଗ୍ରହ ନିବେଦନ କହିବା ଶିବ ପାଶେ
ମଧୁର ଏଥି ।

କେତେ କେ କଲେ ପାପ ଅନ୍ୟାୟ ଅବସ୍ତର
କରମ ଘୋର,
ତୋ ପ୍ରିୟଜନ ଲାଗି ଏତକ ଅଧିକାର
ନାହିଁ କି ତୋର ?
ସକଳ ଭୟ ଭୁଲି କର ତୁ ନିବେଦନ
କରୁଣ ଗାନେ
ନିଠୁର ବାନ୍ଧବାନ୍ଧ ଦଅନା ପରମାଦ
ଅବଳା ପ୍ରାଣେ ।



୩—ତାର, କନକ ଆଖି    ତାର କଜଳ ଆଖି
ଝର ଝର ବରଷାରେ    ଯାଉଛି ଡାକି ।
ବାତାୟନ ପଥେ ଦୂର ଶୂନ୍ୟ ବେଳାକୁ ଚାହିଁ,
ନୀରବ ନୟନ ତାର ଗାଉଥିଲା ନାହିଁ ନାହିଁ,
ଅସ୍ତ ଗଲେଣି ରବି    ମନ୍ଦରେ ଆସେ ନାହିଁ
ଚପଳ ଏ ସମୀରଣ ତାର ସାଖି !
ତାର କଜଳ ଆଖି,
ଝର ଝର ବରଷାରେ    ଯାଉଛି ଡାକି ।

ଝାଉଁ ବନେ ଶୁଭୁଥିଲା  ତାର ସମବେଦନାର
ହାହାକାର କରୁଣ ଶ୍ୱାସ,
ଭଗ୍ନ ଲହରୀ ଗୀତେ  ସିନ୍ଧୁ ଅସୀମ ପାରେ
ତା ବେଦନା ମଳିନ ଆଭାସ !
ପକ୍ଷୀଗୀତେ ଲଭିଥିଲା  ତା ହତାଶ ନାହିଁ ନାହିଁ
ନଭେ ରୂପ ମଳିନ-ସୁଷମା
ଶ୍ରାବଣ ପୟୋଧର  ମଳିନ ଇନ୍ଦିବର
ବହେ ତାର ନୟନ ଉପମା !

ବେଲାନିଳ କେବେ ଆସି ପୋଛୁଥିଲା ଲୁହଧାର,
ରଞ୍ଜିଲ ଛଷିତରେ  ଚୂର୍ଣ୍ଣ ଚିକୁର ସାର,
ମରମ ପରଶି ତାର ଯୌବନ ହାହାକାର
ଛନ୍ଦେ ମୋ ରହିଗଲା ରୂପତେ ଲାଗି !
ତାର କନକ ଆଖି !
ଝର ଝର ବରଷାରେ ଯାଉଛି ଡାକି ।

---

୪—ସେ ରୂପର କାହିଁ ତୃପ୍ତି ସଜନି
ମାଧୁରୀର କାହିଁ ଶେଷ ?
ତୃଷିତ ପରାଣେ ଭରିଛ ତ ତୁମେ
ସ୍ୱପ୍ନର ସମାବେଶ !
ଯେବେ ଗୋ ଅସୀମ ହେବ ଏ ଜୀବନ,
ନିର୍ନିମେଷ ଏ କ୍ଳାନ୍ତ ନୟନ,

ସୁଦୂର ହେବ ଗୋ ଭୀଷଣ ମରଣ
ଶାନ୍ତ ପରାଣେ ଲେଶ ।
ସେ ରୂପର କାହିଁ ତୃପ୍ତି ସଜନ
ମାଧୁର୍ଯ୍ୟର କାହିଁ ଶେଷ ?

ଜାଣିଛୁ ଅସୀମ ଛନ୍ଦ ସୂଚନା
କରି ସେ ପରାଣ ଅତଳ,
ହେ ଶରଶୁଭ୍ର ବିମଳ !
ସନ୍ଧ୍ୟାର ରାଗେ ମଉଳି ଯିବ ଗୋ
ଚିରଉଲ୍ଲେସିତ କମଳ !

ତା ପରେ ଦୁଃଖ ହତାଶ ମୋହର
ତୁମରି ମଧୁର ହାସ,
ତୁମର ଗୋ ଅଣୁ ଚିରନ୍ତ ମୁକ୍ତ
ମୋ ମରମେ ଚିର ତ୍ରାସ !
ଦିଅନ୍ତ ଯେବେ ସେହି ରୂପ ଗୋଟି
ଅର୍ଦ୍ଧିରେ ବକ୍ଷେ ଥରେ ହେଲେ ଲୋଟି
ଧନ୍ୟ ଜନମ ମୋର ଶତକୋଟି
ବେଦନାର ସମାବେଶ;
ସେ ରୂପର କାହିଁ ତୃପ୍ତି ସଜନ
ମାଧୁର୍ଯ୍ୟର କାହିଁ ଶେଷ ?



୪—ଜଳ ମେଘର ଶୀତଳ ପବନ ଲାଗିଲା;
ମୋର ଛୁଇଁ ପରଶେ ପାରିଜାତ ବ୍ୟଥା ଜାଗିଲା ।
ବହୁ ଦିବସର ସଞ୍ଚିତ ଲୁହଧାରା ସେ
କାହାର ଆଘାତ ଆଜ ଗୋ ପରଣ ପରାସେ !
ଆକୁଳ ଏ ମୋର ଯୌବନ କବା
ବରଷା ଦୁଆରେ ମାଗିଲା ।
ଶୀତଳ ପବନ ଲାଗିଲା !

ସେ ଦିନ ତ ମୋର ଦୁଆରେ ଆକୁଳ ବରଷା;
ସେ ଦିନ ତ ତାର ଝରିଲା ପୀରତିଭରସା;
ସେ ଦିନ କବିତା ଛନ୍ଦ ଦେଲି ମୁଁ ମେଲି;
ସେ ଦିନ ପବନେ ଅଳେକ ଅଶାର କେଳି;
ଇନ୍ଦ୍ରଧନୁ ସେ ଯୌବନ ପଟେ
ନାଭିଗଲା କାହିଁ ସହସା !
ଦୁଆରେ ଆକୁଳ ବରଷା ।

ଯାଇଛି ଆଜ ଗୋ ଯୌବନ ଚିର ସ୍ୱପନ,
ମଳିନ କବର ବାଞ୍ଛନୀ ମାଲ୍ୟ ଭୂଷଣ,
ରିକ୍ତ ଜୀବନେ ନାହିଁ ନାହିଁ ଉଲେ ଶୋଚନା !
ନାହିଁ କଳ୍ପନା ! ସେ ଲଗି ନାହିଁ ଗୋ ବେଦନା !
ଯାଇଛି ଯା କପାଁ ଛୁଇଁ ଯାଏ ହୃଦ ?
ବରଷାରେ ସେ ମୋ ଦୂଷଣ !
ଯୌବନ ମୋର ସ୍ୱପନ ।

[ ୧୯୨୫ ]



୬—ତୁମେ ଅସ ଅଜ ବରଷା ସନ୍ଧ୍ୟାତେ ଭାସି,
ତୋଳି ନିଅ ମୋର ମଳିନ ବାସନା ରାଶି,
ଭୁଲିଯାଏ ଘାସେ କଜଳ ବାଦଲ ଛାଇ,
ରୂପର ତୋଫାନ କରେ ଅଜ' ମୋତେ ବାଇ,
ସ୍ୱପ୍ନମୁଗ୍ଧ ଚିର ବାଞ୍ଛିତ
ଚିର କଳ୍ପନାବାସୀ !
ଯାଅ ତୁମେ ପୁଣି
ବରଷା ସନ୍ଧ୍ୟାରେ ଭାସି ।

ଭାଦର ମେଘର ପବନ ଖେଳଇ କେତେ,
ତଟିନୀ ସଲିଳେ ପୁଣି ଶ୍ୟାମ ଧାନକ୍ଷେତେ,
ସବୁଟି ପୁଲକ, ଶିହୁ ଆନନ୍ଦ ହର୍ଷ,
ଭଗ୍ନତରୁଣ କେବଳ ଏଥି ବିମର୍ଷ
ଶିର ନତକରି ବିଫଳତା ପ୍ରାଣେ
କଣ୍ଟାଘାତ କରେ କେତେ !
ପବନ ଖେଳଇ କ୍ଷେତେ ।

ଶାରଦ ଆଗମେ କ୍ରନ୍ଦନ ହାହାକାରେ—
ଲୁହିବ ଶୂନ୍ୟେ ? ନ ବଳଇ ମନ ବାରେ !
ଏ ସୁଷମା ସୁଖୁଁ ବଞ୍ଚିତ ହେବାପାଇଁ
ପିପାସା-ଆକୁଳ ମନ ମୋର ମାନୁନାହିଁ ;
ପୀରତ ସ୍ପର୍ଶେ ଯୁକ୍ତ କର ଟେକୋ
କ୍ଷିପ୍ତ ଏ ମେଘ ଧାରେ;
ଅନ୍ତର ହାହାକାରେ !

—— ——

୭— ପୀରତ ଅସିଲ ଅଧରେ ମୁରଲୀ ଧରି

ବେନି କାନେ ତାର ଦୁଲୁଥିଲ ଗୋଲପ କଳି !

ଗୋଲପର ହାର ତା ଶିରଭୂଷଣ,

ତା ବେନି ନୟନେ ମୁଗ୍ଧ ଭୁବନ,

ବଡ଼ ଚପଳ ସେ ତନୁ ଉଠୁଥିଲ ଥରି;

ପୀରତ ଅସିଲ ଅଧରେ ମୁରଲୀ ଧରି ।

ତା କଟୀ ମେଖଳା କର କଙ୍କଣ

ମୋହୁଥିଲ କେତେ ଫୁଲେ,

ଅଶା ଶତଦଳ ଫୁଟୁଥିଲା ଅହା

ତା ପାଦ ପରଶ ମୂଲେ,

ତାକୁ, ଦେଖିଦେଲେ ଥରେ

ସବୁର ମନ ତ ଭୁଲେ,

ଶୋହୁଥିଲ କେତେ ଫୁଲେ । ୧ ।

ଛଳ ଛଳ ମେଘ ଦୂର ନଭକୋଣୁଁ

ତା ରୂପେ ପଡ଼ିଲା ଲୋଭି ।

ଉଲସି ଉଠିଲ ମହୀ;

ଅବନତ ତରୁ କାନେ କାନେ କାବା

ସମୀରଣ ଗଲା କହି ।

ଗାଇଲ ସେ ଗୀତ କହିଲ ଅଥ ।

କହ କିବ ତୋର ଅନ୍ତର ବ୍ୟଥା,

ଅଧରୁ ରକତ ଥୋପି ପଡ଼ୁଥିଲ

ପଡୁଥିଲ ଗୀତ ଝରି,

ପୀରତ ଅସିଲ ଅଧରେ ମୁରଲୀ ଧରି । ୨ ।

ଜୀବନଟାକୁ ସେ ଗାଇଲା ପୀରତି
ସୁଖ-ଆନନ୍ଦ-ଛନ୍ଦେ,
ଡାକିଲା ସେ ଲାଗି ଭରିଦେବ ଆସ
ମୁଗଧ କୁସୁମ ଗନ୍ଧେ ।
କାହିଁକି ଅକୂଳ ନୀରସ ଭୁବନ ଦ୍ୱନ୍ଦ୍ୱେ ?
ଝରାଇ ଦେଲୁ ନୀରବ ପୀରତି
ସରିଣୀ ମନ୍ଦେ ମନ୍ଦେ !
ପୀରତି କୁହଇ ନାହିଁ ମନକଥା,
ଜୀବର ହତାଶେ ନୁଆଁଇଲି ମଥା;
ବନ୍ଧିଲେ ଲୁହ ଝାଳିଲି ଅନ୍ତରେ
ଧୂଳିରେ ଲୋଟିଗଲି ମରି !
ପୀରତି ଅସିଲା ମଧୁର ମୁରଲୀ ଧରି । ୩ ।



୮—ଦୂରର ଯା ତର ଅନ୍ତରେ ଅନୁଭବ;
ସେହି ତ ରିକ୍ତ ଜୀବନର ଗଉରବ ।
ସେଥିଲାଗି ସିନା ଅଶା ଶତଦଳ,
ଯୌବନ ଲୁହେ ଶୁଭ୍ର ବିମଳ,
ନ ଥାଏ ପରଶେ ଶତ ବାସନାର ରବ;
ଦୂରର ଯା ତର ଅନ୍ତରେ ଅନୁଭବ !
ଶାନ୍ତ ମଧୁର ଶାରଦ ଗଗନ
ମୁକ୍ତ ଶ୍ୟାମଳ ପ୍ରାନ୍ତର,
ପବନ ମେଳେ ଆନନ୍ଦ ଗୀତ
ନୀରବେ ପରଶେ ଅନ୍ତର ।

ସନ୍ଧ୍ୟା ଗଗନ ସୁନ୍ଦର କବା
ଅଶାର ରକ୍ତେ ରଞ୍ଜିତ !
ଜୀର୍ଣ୍ଣ ମୋ ବୀଣା ଗଗନକୁ ଚାହିଁ
ଗାଇବ କି ଅଜ ସଙ୍ଗୀତ ?
ଚିର ଜୀବନର ଯେତେ ବିଫଳତା,
ବକ୍ଷର ଶତ ଶତ କ୍ଷତ ବ୍ୟଥା,
ଧନ୍ୟ ସକଳ ! ଶୋଚନା ନାହିଁ ତ ଲବ !
ଦୂରର ଯା ଚିର ଅନ୍ତରେ ଅନୁଭବ ।



୯— ଅପଣାର ବୋଲି ରଖିଛି ଯାହା ମୁଁ ପ୍ରାଣେ,
ଦେଇପାରେଁ ମୁଁ ଗୋ ଦେଇପାରେଁ ଦାନ ଗାନେ !
ଦେଇପାରେଁ ସବୁ ସଜଳ ନୟନେ,
ଚିରଦିନଲାଗି ଶୂନ୍ୟ ଏ ମନେ—
ନ ଚାହିଁବ ପଥ ଅଜ ଅଶା-ଅଭିମାନେ !
ଅପଣାର ବୋଲି ରଖିଛି—ଯାହା ମୁଁ ପ୍ରାଣେ ।
କହୁନାହିଁ ମୁଁ ତ ସେ ଅସୀମ ସୁଖେ
ହେବ ବୋଲି ଖାଲି ଭାଗୀ,
ନଅ ନଅ ଅଜ ଅଦରର ଧନ
ଜୀବନ ରହେ ଯା ଲାଗି ।
ଜାଣିଛି ମୋହର ଶୂନ୍ୟ ଅସନ !
ଗଗନ ପବନ ଥର,
ନ ଡାକିବେ ଥରେ କୁସୁମ କାନନ
ନ ଉଠିବ ଅଜ ଭର !

ସେହି ଦାନେ ମୋର ପୂର୍ଣ୍ଣ ଜୀବନ,
ସନ୍ଧ୍ୟାର ରାଗେ କମଳ ଯେସନ,
ପୂର୍ଣ୍ଣ ମୋ ସୁଖ ଜୀବନର ବ୍ୟବଧାନେ;
ଦେଇପାରେ ମୁଁ ଗୋ ଦେଇପାରେଁ ଦାନ ଗାନେ !

---

୧୦—ଯିବ ? ଯିବ ଯେବେ ମେଲଣି ଦେବ ମୁଁ ହସି,
ଦୁର୍ବଳ ସମାନ ପଡ଼ିବ ମୁଁ ଗୋ ଲଣି ।
ମାତର ଜନମେ ନାହିଁ କ ମମତା—
ଏ ରୂପେ ? ଏ ଅଖି ଦେଉନାହିଁ ବ୍ୟଥା ?
ଯାଅ—ଗଲେ ପଛେ ଅଶ୍ରୁ ଗଣିବ ବସି ।
ମେଲଣି ଦେବ ମୁଁ ହସି ।

ଦେବ ବୋଲି ଅଜି ତରୁଣୀ ମୁଗ୍ଧ ପ୍ରାଣ,
ଧରିଅଛି ଦେଖ ମୁକ୍ତ ଉଦାର ଗାନ !
ଦୟଯତନେ ଶାନ୍ତ ସିନ୍ଧୁ ଗଗନେ ରହି,
ଅବସାଦ ମାୟା ନୟନେ ମୋହର କାହିଁ ?
ଯାଅ, ଯାଅ, ସୁଖେ ! ଉଜ୍ଜ୍ୱଳ ତୁମ ମୁଖ !
ତୁମର ସୁଖେ ଯେ ଅସୀମ ମୋହର ସୁଖ !
ମୋ ପୀରତି ନୁହେଁ ପାପକଳୁଷିତ,
ନୁହଇଁ ତ କେବେ ବାସନାଦୂଷିତ,
ଲୁଚିଯାଅ ମେଘେ ତରୁଣୀ ହୃଦୟ-ଶଶି !
ମେଲଣି ଦେବ ମୁଁ ହସି ।

---

୧୧— ଶାରଦ ଜୋଛନା ସ୍ନାତ ଧାରେ ଅଚେ ପାହ୍ନ ଗୋ
ବ୍ୟଥିତ ଚକୋର କାଁପି କାନ୍ଦେ ?
କ୍ଳାନ୍ତ ନୟନେ କବ ଦୂରପଥ ଚାହିଁ ଗୋ
କରୁଣ ସ୍ୱରଟି ତାରେ ବାନ୍ଧେ ।

ଶାନ୍ତ ନୀରବ ଏହି ଧରା ଗୋ
ପୂର୍ଣ୍ଣ ତରଳ ମଧୁ ଜୋଛନା,
ଆଜ ତୁମ ଅଭିସାର ପରା ଗୋ
କ୍ଷୁବ୍ଧ ପରାଣି କରେ କଳନା !

ମୁକ୍ତ ଗଗନେ ଚାହିଁ ଯୌବନ ମାଗଇ
• ଜାଗ୍ରତ ତୃଷ୍ଣା କି ଆଶା ଗୋ,
ଅଙ୍ଗେ ଶୀତଳ ବାଆ ମନ୍ଦେ ମୋ ଲଗଇ
ମୋ ପୀରତି ପାଏ ନାହିଁ ଭାଷା ଗୋ ।

ଶାନ୍ତ ତାରକା ଦୂରେ ଗାଉଅଛୁ ସଙ୍ଗୀତ
ପୀରତିର ସତ୍ୟର ଛନ୍ଦ,
ସ୍ନିଗ୍ଧ ଲତିକା ତରୁ ପ୍ରୀତିରସେ ରଞ୍ଜିତ
ପ୍ରାଣଭରା ପୁଲକ ଆନନ୍ଦ ।

ବ୍ୟଥିତ ଚକୋର କିବା ଶୋଚନା ?
ସତ୍ୟ ସେ ନୁହଇ ରେ ଛଳନା !
ସୁମଧୁର ବ୍ୟଥାର ଅନଳେ ସେ,
ଶାନ୍ତ ସେ ମୃତ୍ୟୁ ପରଶରେ !
ପବନ ଅନ୍ତରେ ବଳେ ସେ
ଦୁଃଖୀ ସେ, ନୁହଇ ହରଷରେ !

ଅଙ୍ଗେ ବିମଳ ବିଭା ଖେଳଇ
ଅରୁଣ ଅଧରେ ତାର ହାସରେ;
ତରଳ ପୀରତି ପ୍ରାଣ ଗଳଇ
ବାଣେ ତା ପ୍ରୀତି ପରକାଶରେ ।
ପୀରତି ନୟନ ତାର ଉଜଳ,
ଧରିଛି ସେ ଶିର ଆଶା କମଳ,
ଧନ୍ୟ ଜୀବନ ତୋର ଧନ୍ୟ ନିରାଶା ତୋର,
ଜନମ ବେଦନା ତୋର ସଫଳ !
ଜାଗ ମୋର ଯୌବନ ଜାଗ ରେ !
ଅଙ୍ଗେ ଶୀତଳ ବାଅ ଲାଗଇ !
ତରୁଣ ପରାଣ ଅନୁରାଗରେ
ତୋ ବେଦନା ଦୁଆରେ ସେ ମାଗଇ ।
ସଂଶୟ ଶୋଚନାଟି ଠେଲ ରେ,
ଦିଅ ମରମର ଗୀତ ମେଲ ରେ;
ଦିଅ ଦିଅ ପୀରତିର ଅଗ୍ନି ସେ,
ଦିଅ ସବୁ ସତ୍ୟର ବହ୍ନି ସେ !
ଅମର ଜୋଛନା ରାତି ଯାଏ ଧୀରେ ପାହି ରେ
ବ୍ୟଥିତ ଚକୋର ନାହିଁ କାନ୍ଦେ !
ଦୀପ୍ତ ନୟନେ କବି ଦୂର ପଥ ଚାହିଁ ରେ
ପୀରତି ସୁରଟି ତାରେ ବାନ୍ଧେ !



୧୨— ଦୂର ଦେଶେ ଦଶେ କାର କନକ ତରୀ,
କିଏ ସେ ଗୋ ଜଣା ପଡ଼େ ତୁମର ପରି ।

ଶାନ୍ତ ତଟିନୀ ଜଳ,
ପୀରତିରେ ଟଳ ଟଳ,
ସନ୍ଧ୍ୟାର ଗଗ ନଦ୍ଧଁ ପଡ଼ଇ ଝରି,
ତୁମେ ଅବା ବନ୍ଧୁ ନାଥ କନକ ତରି !

ସ୍ୱାର୍ଥ ବେଦନା ମୋର ପରଶେ ଜାଲେ,
କେସନ ତୁମର ସାଥି ଲଭଇଁ ଭାଲେ ।
ନୀରବେ ରୂପର ଭୋଗ,
ନୀରବେ ପରଶେ ଯୋଗ,
ନାହିଁ ମୋ କରମେ ! ତନ୍ତୁ ଉଠଇ ଥରି,
ଦୂର ଦେଶେ ଦଶେ ତୁମ କନକ ତରି ।

ନନ୍ଦୀ କାନେ କହ କିବା ଅଫୁଟା କଥା;
ନଡଶିରେ ଶୁଣେ ଗିରି ମଧୁର ବ୍ୟଥା ।
ବିରହ ବ୍ୟଥାଟି ଜାଲି,
କେଉଁ ଦୂରେ ଯାଅ ଗୁଲି,
ମୃଦୁ ହାସେ ଫୁଟେ ଫୁଲ ଅବନୀ ଭରି;
ଦୂର ଦେଶେ ଦଶେ ତୁମ କନକ ତରି !



୧୩—

ମଧୁର ପୀରତି ନିମେଷ ମିଳନ,
ମଧୁର ପୀରତି ନିମେଷ ସ୍ପର୍ଶ;
ସେତିକି ଜୀବନେ ଅସୀମ ଭରସା !
ସେତିକି ତ ଆଶା ଅମର ହର୍ଷ !
ନିମେଷ ମିଳନେ ଅନ୍ତର ଖୋଲି,
କାହା ପାଶେ ଧାଏଁ ଦୁଇ କର ତୋଳି,

ଅନ୍ତର ପାଶ୍ଯୁ କର ନାହିଁ ଦୂର,
ତାହା ପାଖେ ଗାଏଁ ମୁଁ ଗୋ ବିମର୍ଷ !
ମଧୁର ପୀରତି ନିମେଷ ସ୍ପର୍ଶ ।
ସେ ମଧୁ ମିଳନେ ପଠାଇବ କର ?
ଢାଳିବି ଲୋତକ ମୁକ୍ତାବିନ୍ଦୁ,
ତୁମରି ପରଶ ବେଳାରେ ଲୋଟିବି
ମୁଁ ଶର ଅକୂଳ ଗଭୀର ସିନ୍ଧୁ !

ମୁଦିବି ନୟନ, ପରଶିବି ସୁଖେ,
ଆଶାର ଅଲେଖ ଖେଳିବ ଏ ମୁହେଁ,
ନ ରହିବ ଦୂରେ ଅନ୍ତର ପ୍ରିୟ
ତୁଳି-ଜୀବନ-ଶର-ଅଦର୍ଶ !
ମଧୁର ପୀରତି ନିମେଷ ସ୍ପର୍ଶ !

---

୧୪—

ମଳୟ ଯେବେ ସହି ବିଶ୍ୱ ପ୍ରାଣ ଦ୍ୱାରେ ବହିଲା,
ସନ୍ଧ୍ୟା ତାରା ଯେବେ ତରୁଣୀ କାନେ ଧୀରେ କହିଲା,
"ଜାଗରେ ଜାଗ ଯୁବା !"...ଅଳସ ନୟନେ ମୁଁ ଚାହିଁଲି—
ସକଳ ହରଷରେ ମିଶାଇ ତୁମ ବ୍ୟଥା ଗାଇଲି ।
ଗୋଲାପ ଯେବେ ଲଚି ପବନେ ପ୍ରୀତି ଦେଲା ମିଶାଇ,
ହାସ୍ନା ହେନା ଯେବେ ଜୋଛନା ତନୁ ଦେଲା ନଚାଇ,
ଅକୁଳ ପିକ ଗୀତ :— ସ୍ୱପ୍ନ-ରଥ ବହି ! ଅଇଲି—
ମଧୁର ଗୀତେ ତାର ମିଶାଇ ତୁମ ବ୍ୟଥା ଗାଇଲି ।
ବିଶ୍ୱ ବିହ୍ୱଳ ଗନ୍ଧେ କଲା ଯେବେ ବକୁଳ,
ନ ଜାଣେ କାହିଁ ପାଇଁ ବିଜନେ ବସି ହେଲି ଅକୁଳ,

ଚକୋର ପ୍ରିୟା ଅଗେ ଗାଇଲ "ନଦୀ ପାରେ ରହିଲ !"
ଶୂନ୍ୟେ ଗୁହିଁ ଏକା ତୁମର ବ୍ୟଥାଟି ମୁଁ ଗାଇଲି ।

———

୧୫—

ମେଲଣି ବେଳ ହେଲ ! "ଯିବ ମୁଁ !" ବୋଲି ଧୀରେକହିଲ;
ସୁଦୂର ଅଭିସାର-ଉଦାସ- ଗୁହାଣିଟି ବହିଲ ।
"ଯିବ କ ଗ୍ଳଲ ସତେ ?"— "ଯାଅ!" କହିଲ ମତ୍ର ବାରତା,
ମାତର କାହିଁ ପାଇଁ ଛଲେ ତ ତୁଟେ ନାହିଁ ମମତା ?
ଅମର ସେହି ହାସ ସୁଷମା ନିରୁପମ ମଧୁର,
ମିଳଇ କାହିଁ ଭବେ ? ଭୁଲି ପରାଣ ଚିର ଅତୁର !
ପାଷାଣ ପରାଣରୁ କେସନେ କରିବି ମୁଁ ଅନ୍ତର ?
କେସନେ ଭୁଲିବ ମୁଁ ଅମର ପ୍ରୀତି ଚିର ସୁନ୍ଦର ?
ଜୀବନେ କେତେ ଜାଣି ଗୁହିଁଛୁ ନିରଳସ ନୟନ,
ଶୂନ୍ୟ ତୁମ ପଥ, ପୁଣି ଏ ସୁଦୂରର ମିଳନ ।
କେତେ ମୁଁ ଦିନୁ ଦିନ ବିଫଳ ବ୍ୟଥା ଗଣି ଗୁହିଁବ ?
ନବୀନ ଯୌବନ ପାଟଣ ଅକୂଳେ କେତେ ଗାଇବ ?
ବରଷା ବାଅ ଦୂରେ ପ୍ରବଳ ବେଗେ ଯାଏ ବହି ଗୋ,
ଧୀର ତଟିନୀ ନୀର ସୁଷମା ପାରେ ନାହିଁ ସହି ଗୋ !
ସହିବ ଅବସାଦ କେସନେ ତୁମ ଛବି ହତାଶ ?
ଜୀବନେ ନାହିଁ ଯେବେ ତୁମରି ପୀରତିର ଅଭ୍ୟାସ !

(ସମାଧି-ସ ଝ



## ସନ୍ଧ୍ୟା ମେଘ

ଅଜ, ସନ୍ଧ୍ୟା ଗଗନ ସହ୍ମ ସୁନ୍ଦର,
ରଞ୍ଜିତ ମେଘ ଗଢ ମନ୍ଥର ।
ଦୂର ଫୁଲ ଉପବନ୍ତୁ ଧୀରେ ବହେ ସମୀରଣ,
ନିର୍ଜନ ତୀରତରୁ ସଘନ ନିମଗନ,
ଶାନ୍ତ ବ୍ରତଭ୍ରେର ସହ୍ମ ଶ୍ୟାମଲ ଗିରିବନ
ବନ୍ଧନ ନ ମାନଇ ଅନ୍ତର ;
ସନ୍ଧ୍ୟା ଗଗନ ସହ୍ମ ସୁନ୍ଦର ।

ଏସ ଅସ ସଜନି ରେ ସୁଖେ ଦେବା ଭସାଇ
ଯମୁନା ସଲିଲେ ନବ ଯୌବନ,
ସ୍ପନ୍ଦନ କଲଣି ଗୋ ବ୍ରଣ୍ଡୁ ପର୍ବଣି ମନ
ସ୍ୱପ୍ନରସିକ କବି କନ୍ଦନ ।
ଏଇ ଶୁଣି ଦୂର୍ରୁ ଅସେ ସମୀରଣେ ଥରି ଥରି,
କୁସୁମ ସୁରଭି ଅବା ନବୀନ ପ୍ରଣୟ ପରି,
ଲଜ୍ଜା ସରମ ଭୁଲି ଯୌବନେ ନେବା ବରି
ସୁରବାସି-ବାଞ୍ଛିତ୍ର ମନ୍ତର;
ସନ୍ଧ୍ୟା ଗଗନ ସହ୍ମ ସୁନ୍ଦର ।

[୧୯୨୪]



# ମୁକ୍ତସ୍ୱପ୍ନ

ବନର ମୟୂର ନଗର ସୌଧେ
ବସି ଭାବିଲ ମନେ ମନେ,
ପ୍ରଭାତ ପବନେ ଦକ୍ଷିଣା ମେଘ
ଭାସିଆସେ ଅନୁକ୍ଷଣେ ।

ଭାବିଲେ କାହିଁ ମୋର କାନନ ଭୂଇଁ,
ଉଡ଼ି ଯିବ ଆଜ ସେ ଦେଶେ ମୁହିଁ,
କଳା ମେଘ ନଭେ ଯାଏ ପହଁର,
ପାଦପ ଲତିକା ଉଠଇ ଥର,
ଉଡ଼ିଯିବ ମୁ ଗୋ ଉଡ଼ିଯିବ !
କିଏ ପାରିବ ଧରି ?

ବନ୍ଧ ତୋହର ଚରଣଯୁଗଳ
ବିଫଳ ସ୍ୱାଧୀନ ସପନ !
ମୁକ୍ତି ? ସେ ତୋର କଳ୍ପନା ସିନା
କାହିଁ ବା ସୁଦୂର କାନନ ?

ବନର ମୟୂର ଅକୁଳ ନୟନେ
କଜଳ ମେଘକୁ ଚାହିଁ,
ଭାବିଲେ ମନେ ମନେ ନବୀନ ବର୍ଷା
ସଙ୍ଗୀତ ଦେବ ଗାଇ ।
ଗର୍ଜେ ବଜ୍ର ଗଗନଭରେ,
ଚପଳ ଦାମିନୀ ପୁଲକେ ଥରେ,

ବହଇ ଶୀକର ଶୀତଳ ବାଅ,
ତୀରତରୁ ସୁଖେ କହଇ ଅହା !
ଭୁଲଇ ମୟୂର ଅସୀମ ମୁକ୍ତି
ସଙ୍ଗୀତେ ସତେ ନାହିଁ ମୋ ରାହା?

'ବନ୍ଧ ତୋହର ଚରଣ ଯୁଗଲ, ବିଫଳ ମୁକ୍ତି ସପନ;
ମୁକ୍ତି ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର କାନନ !'
ବନର ମୟୂର ଦେଖଇ ସ୍ୱପ୍ନ ଦୂର ବନ ତରୁଶାଖେ,
ଶ୍ୟାମ ପ୍ରାନ୍ତରେ ବିରହିଣୀ ପ୍ରିୟା ଅକୁଳ ପରାଣେ ଡାକେ !

ଦୁଃଖୀ ବିରହ ବାରତା କହୁ;
କ୍ଷିପ୍ର ଜଳଦ ଯାଉଛି ବହୁ,
ବନ ଅନନ୍ଦ ପୀରତି ସୁଖ,
ଭୁଲି ଉଜ୍ଜ୍ୱଳ ମୟୂର ମୁଖ !
ଛୁଟିଲେ ଉଡ଼ିଯିବ ଚୁମ୍ବିବ ପ୍ରିୟା
ବଦନ, କି ମୋର
ଶୋଚନା ଦୁଃଖ ?

'ବନ୍ଧ ତୋହର ଚରଣ ଯୁଗଲ ବିଫଳ ମୁକ୍ତି ସପନ
ମୁକ୍ତି ? ସେ ତୋର କଳ୍ପନା ସିନା ! କାହିଁ ସେ ସୁଦୂର ଗଗନ !'
ଭୁଲଇ ମୟୂର ବିଫଳ ସ୍ୱପ୍ନ ? ବିଫଳ ଏ ମୋର ଜୀବନ ?
ଯହିଁ ନାହିଁ ଶୁଭେ ମୁକ୍ତିର ଗୀତ ଅନୁକୂଳ ବହେ ପବନ !

ମରଣ ଗୋ ତୁମେ ରହିବ ଦୂରେ,
ମୁକ୍ତିର ଗୀତ ପରାଣେ ପୂରେ !
ବାଙ୍ଗୁଛି ବାଜିବ ଯିବ ମୁଁ ଉଡ଼ି,
ଆସିଅଛୁ ଏଥି ମୋ ପଥ ହୁଣ୍ଡି !

କଳ୍ପନା ନୁହେ ସତ୍ୟ ସେ ମୋର ସ୍ୱପ୍ନ ସୃଷ୍ଟି !
ସେ ଦେଶର ନବ ରବି ଶଶାଙ୍କ ଯାଏ ନା ବୁଡ଼ି !

ଡାକ ଡାକ ପୁଣି ଅକୁଳେ ପ୍ରିୟା;
ସମୀରଣ କର ଦଗ୍‌ଧ ହିଆ !
ହସି ଉଠ ଦୂର ପାଦପ ଲତା,
ଶ୍ୟାମ ଗିରି ଭୂଇଁ ଜଗାଅ ବ୍ୟଥା !

ଅମର ମୁକ୍ତି ! ଅମର ସ୍ୱପ୍ନ ! ନତ କରେ କିଏ ଏ ମୋର ମଥା ?
ପାଗଳ ! କ୍ଷିପ୍ତ ! ହେ ଜଳଦ କହ ସେ ଦେଶ କଥା !
ବନ୍ଦି ମୋହର ଚରଣ ଯୁଗଳ ? ବିଫଳ ମୁକ୍ତି ସ୍ୱପନ ?
ମୁକ୍ତି ? ସେ ମୋର ଜୀବନର ସତ୍ୟ ! ବନ୍ଧନ ହେବ ମୋଚନ ।

[୧୯୨୭]



## ରୂପ କଥା

ଭାଦର ନୀଳାକାଶ ବାଦଲ ରଙ୍ଗେ ଅଙ୍ଗ ଘୋଡ଼ାଇ;
ମେଘର ଶତ ଫାଙ୍କେ ଅରୁଣ ଥରେ ଯାଏ ଅନାଇଁ ।
ଏସନେ ତା ନୟନ
ପରଶି ଯାଏ ମନ,
ପାଦପ ଲତା ଯଥା ସମୀରେ,
ତରୁଣୀ ଥରି ଉଠେ ଅଧୀରେ ।୧।

କଜଳ ଦୂର ମେଘ ନୀରବ ଆଖି ତାର କଜଳ
କୋମଳ ଶ୍ୟାମ ଘାସେ ଶିଶିର ବିନ୍ଦୁ ସେ ସଜଳ
କଜଳ ବେଣୀ ଗୋଟି,
ହେଲାରେ ପଡ଼େ ଲୋଟି,

ଅଧରୁ ଝୋପି ପଡ଼େ ରକତ,
ବଧୂଲ ଲଡଜେ ମରେ ନିରତ ! ୨ ।
ତାଁ ହାସେ ଶାରଦର ଶୁଭ୍ର ଶେଫାଳିକା ଝରଇ,
ଭରଏ ଗଙ୍ଗାର ଧବଳ କାଶ ବନ ଥରଇ;
ନାବିକ ତରୀ ବହେ,
ତା ଗୁଣ କେତେ କହେ,
ଯାଧବ ଘର ଝିଅ ମିଥିଳା ପୁରେ ତାର ସଉଧ;
ଦେହ ଦେଖେ ଭାସିଯାଏ ଉଦାସୀ ସମ
ଧଳା ବଉଦ । ୩ ।
ଦୂରଦେଶର ରାଜା କେତେ ଯେ ଅସିଲେ ତା ଅବାସେ,
ତା ରୂପ ମୋହେ ସବୁ ଫେରିଲେ
ନତଶିରେ ହତାଶେ;
ଯୋଗୀ ସେ ଥିଲ କାହିଁ,
ଅସିଲ ଗୀତ ଗାଇ,
ଦୁଆରେ ବୀଣା ତାନ ବଜାଇ,
ତରୁଣୀ ଧୃତି ଦେଲ ହଜାଇ । ୪ ।
ଭସ୍ମବୋଳା-ତନୁ ବସନ ଗଇରିକ ମୋହିଲ,
ବରଣମାଳା ଗଳେ ଲମ୍ବାଇଲ ନବ ଛଇଳା ।
ମୁଗ୍ଧ ମୁଖେ ଗ୍ରୀବା,
କହିଲ ଗାଇ ନାହିଁ,
ଅଜ କେ ଗୀତ ତୁମ ପରତ !
ବୁହାଇ ଦେଲ ପ୍ରାଣେ ଅମର ପୀରତିର ସରତ ! । ୫ ।
ମିଥିଳା ରାଜପଥେ ଯୁଗଳ କର ଧରି ଚାଲିଲେ;
ମିଥିଳା ପୁରନାରୀ ଝାପରି କରି କେତେ କହିଲେ ।

ଯୋଗୀ ସେ କହେ ହସି
ଯେସନେ ଶୋହେ ଶଶୀ
"ମରଣ ଛାୟା ମୋର ପରାଣ ଘେରିଥିଲା ସୋହାଗି !
ଜାଣିଛୁ ମରଣକୁ ପୀରତି ଗୀତେ ଆଜ ତୋ ଲାଗି !" ୭।

[ ପାଟଣା, ୧୯୨୭ ]



## ଯୌବନ ପୂଜା

ପୌଷ ଜାଗେ,
ଶିଶିର ଲାଗେ,
ପରାଣି କରେ କନ୍ଦନ;
ଏ ତନୁ ମୋର,
ନବୀନ କର,
ଶ୍ୟାମଳ କର ଯୌବନ ! । ୧ ।
ଅଧର ଭର
ମଦିରା ଝର
ପଡ଼ୁ ଗୋ ସାରା ଭୁବନେ;
ଅଳସ ଆଖି
ପୀରତି ଲାଖି
ବାହୁଡ଼ି ଚିର ସପନେ ! । ୨ ।
ସପନ ଲୋକ,
ବେଦନା ଶୋକ,
ପରଶେ ନାହିଁ ଲାବେ ଗୋ;

ମଧୁର ବ୍ୟଥା,
ପୀରତି କଥା,
ନାହିଁ ନ ଥିବ ଭବେ ଗୋ । ୩ ।
ଶ୍ୟାମଳ ଧରା,
କୋମଳ ଖରା,
ପିପାସୁ ପ୍ରିୟ ସ୍ଵାହାଣି;
ନ ସରେ ସୁଖ,
ନାଚେଣି ମୁଖ,
ସରଗେ ଦେବା ରଜନୀ ! । ୪ ।
ବକୁଳ ମଲ୍ଲି
ସୁରଭି ଝରି
ପଡ଼ଇ ନୀଳ ଗଗନୁଁ
ଉଠଇ ଗାଇ
ପୀରତି ବାଇ
କୋକିଳ ଦୂର କାନନୁ । ୫ ।
ଅଳସ ଚିତ
ତରୁଣୀ ଅତି
ସେ ଡାକେ ସ୍ଵହେଁ ଟମକ;
ଅଳପେ ହସେ
ତରୁଣି ରସେ
ପରାଣ ଉଠେ ପୁଲକ । ୬ ।
ପରାଣ ସ୍ଫୂର୍ତ୍ତି
ହୋଇନ ପୂର୍ତ୍ତି
ଜୀବନ ପୂଜା ମହତ,

ନୟନେ ମୋର
ସପନ ବୋଳ
   କପୋଳେ ଲଜ୍ଜା ରକତ ! ୭ ।

କୁସୁମପରି
ମୋ ଦେହ ଭରି
   ମାଧୁରୀ କର ସଞ୍ଚାର
ଶ୍ୟାମଳ କର
ରୁଚିର କର
   ମଳିନ ଜୀର୍ଣ୍ଣ ସଂହାର ।୮।

ନିବେଷ୍ଟି ଜୀରି
ପରିଶେ ପରି
   ଦେବତା କଂଠେ ବନ୍ଦନ;
ଶ୍ୟାମଳ କର
ନବୀନ କର
   ଅମର ନବ ଯୌବନ । ୯ ।

[ ପାଟଣା, ୧୯୭୭ ]



# ମୁକ୍ତିସେନା ସଙ୍ଗୀତ—

ଜୀବନ ଦୀପ ନିଭିଲା, ଧରି   ତିମିର କଲା ଗ୍ରାସ,
ପରାଣି.ଢେର ବାଜିଲା ଶେରେ   ମୃତ୍ୟୁ ଅଟ୍ଟହାସ !
ତୁମର ଚିର ବିଜୟ ବାନା   ଧରିବୁ କାହା ବଳେ ?
ଅନ୍ତରର ଦେବତା ଅହେ   ପ୍ରଦୀପ ନାହିଁ ଜଳେ ।

ଆରତି ଶଙ୍ଖ ନ ଉଠେ ବାଜି, ଦେବତା ତୁମ ଦେଉଳେ ଆଜି,
ହସଇ ମୃତ୍ୟୁ ଦୈନ୍ୟ-ବ୍ୟଥା ଶୁଙ୍କ ପ୍ରାଣ ତଳେ,
ପ୍ରଦୀପ ନାହିଁ ଜଳେ ! ।୧।

ତୁମର ବାଣୀ ବହୁଦୂରୁ ଶିରେ ଭରସା ନାହିଁ ପାଉଁ,
ତମିର ଘୋର କ୍ଷୁବ୍ଧ ସିନ୍ଧୁ ! କେମନେ ତରି ବାହୁଁ ?
ତରଙ୍ଗେ ତେଜ ଉଚ୍ଛ୍ୱାସେ, ଭରସା ନାହିଁ ପରାଣେ ଆସେ,
ଶ୍ରାବଣ ରାତି ଆସଇ ଘୋଟି ନୀରବେ କୂଳେ ରହୁଁ !
ଭରସା ନାହିଁ ପାଉଁ ।୨

ଚିର ଜୀବନ କର୍ଣ୍ଣଧାର ! ଆଦେଶ ପୁଣି କିବା ?
ଶକ୍ତି ନାହିଁ, ଧୈର୍ଯ୍ୟ ନାହିଁ ! ଲୁପ୍ତ ଆମ ଦିବା ।
ଅନ୍ଧ ଖାଲି ଅଶ୍ରୁଧାରେ କରୁଛୁଁ ନିବେଦନ,
ଭଗ୍ନ ଜାନୁ, ଅସ୍ତ୍ର ହୀନ, ସକଳ ଅଭାଜନ ।
ତୁମର ବାଣୀ ବଜ୍ର ସମ ନେବାକୁ ଶିରେ ହେବୁ କି କ୍ଷମ ?
ରକ୍ତାପ୍ଲୁତ ପରାଣେ ପୁଣି କରିବୁ ତୁମ ରଣ,
ସକଳ ଅଭାଜନ ।୩।

ଅମର ତୁମେ ଅଜୟ ତୁମେ ଜୀବନ ରାଜା ଚିର,
ଏ ବାଣୀ ପ୍ରାଣେ ସତ୍ୟ ହେଉ ପତାଇ ଦେବୁଁ ଶିର !
ତୁମର ସତ୍ୟ ଦୀକ୍ଷା କରି ମୃତ୍ୟୁ ଯେବେ ଆସେ
ବରଣି କରି ନେବୁଁ ହେ ପ୍ରିୟ ଚିର ବିଜୟୋଲ୍ଲାସେ !
ତୁମର ବାଣୀ ମର୍ମେ ଫୁଟୁ, ଅବିଶ୍ୱାସ ଦୁଃଖ ତୁଟୁ,
ମୁକ୍ତି ପଥ ସରଳ ହେବ ସକଳ ନିବନ୍ଧନେ !
ପରାଣ-ପ୍ରିୟ ଅମର ତୁମେ ଏ କଥା ରହୁ ମନେ ।



## ପ୍ରଭାତ ସ୍ୱପ୍ନ

ବନ୍ଧୁ ସଜଳ ନୀଳ ଅଖି,
ଭାଦର ଅକାଶ ତାର ସାକ୍ଷୀ,
ପ୍ରଭାତ ଶୀତଳ ପବନ ପରଶେ
ପରାଣ ଦୁଅରେ ଯାଏ ଡାକ ।
ବନ୍ଧୁ ସଜଳ ନୀଳ ଅଖି ।୧।

ଶୁଭ୍ର ଶିଉଳି ପଡ଼େ ଝରି,
ବିରହ ମଳିନ ହାସ ପରି,
ଏ ଦୂର ବିଦେଶେ   କାହାର ସପନେ
କ୍ଷୁବ୍‌ଧ ପରାଣି ରହେ ଲଖି ।
ବନ୍ଧୁ ସଜଳ ନୀଳ ଅଖି ।୨।

ତା ବେଦନା ବହେ ଶସ୍ୟବସି,
ନୀଳ ଧାନ କ୍ଷେତ ଉରସି,
ସମୀର ଲହରେ ତା ଚପଳ ଗତି
ପରାଣର କଥା ରହେ ଚାକି ।
ବନ୍ଧୁ ସଜଳ ନୀଳ ଅଖି ।୩।

କଏ ଗୋ ବଇଁଶୀ ଉଠେ ବାଇ,
ବନ୍ଧୁ ପଥଟି ଚୁହିଁ ଚୁହିଁ
ନୀଳ ଧାନକ୍ଷେତ   କରଇ ଅଧୀର,
ତରୁଣୀ ଶ୍ୟାମଳ ପ୍ରୀତି ଚୁଖି
ବନ୍ଧୁ ସଜଳ ନୀଳ ଅଖି ।୪।

ନୀରବ ନୟନେ ପଦେ କଥା
ସେ ଲଗି ଜୀବନେ ଏତେ ବ୍ୟଥା

ମାତର ସେ କଥା   ହୁଏ ନାହି କୁହା
ଛନ୍ଦ କବିତା ସବୁ ଫାଙ୍କି;
ବନ୍ଧୁ ସଜଳ ନୀଳ ଆଖି । ୫ ।

ଏ ରୂପର ନବ ନବ ଖେଳା,
ତନ୍ଦ୍ରା ଅଳସେ ବହେ ବେଳା;
ଭାଦର ମେଘର ରଞ୍ଜିତ ରାଗ
କିଏ ଗୋ ପରାଣେ ଯାଏ ମାଖି !
ଦୂର ପରବାସେ ମଧୁର ବିରହ
ବନ୍ଧୁ ସଜଳ ନୀଳ ଆଖି । ୬ ।

[ ଜୁଲାଇ, ୧୯୨୮ ]

---

## ଗୋଲାପର ବ୍ୟଥା

ଦିବସ ମୋର ବିଫଳ ଗଲା ନ ହେଲା କହି ଜୀବନ କଥା,
କ୍ଷଣକ ପ୍ରୀତି ଭରସା କରି ମରମେ ମଲା ମରମ ବ୍ୟଥା ।
କୁସୁମ ଦଳ ଗୋଟିକି ଗୋଟି,
ସନ୍ଧ୍ୟା କୋଳେ ପଡ଼ିଲେ ଲୋଟି,
ବିଚାରିଲେ ମୁହିଁ କା ପଥ ଚାହିଁ ମୁଦିବି ବେନି
ନୟନ ପତା ।୧।
ଦେଖିଛ ତାକୁ ଥରେ କି କବି ?
ପୂନିଅ ଶଶୀ ସାଗର ଛବି !
ମଦିର ଛଳ ଅଳସ ଗତି ସ୍ନିଗ୍ଧ ଆଖି —
ସରମ-ନତା । ୨ ।

ଯେସନେ ସନ୍ଧ୍ୟା ପରଶେ ଭୂଇଁ,
ଗ୍ଲେର୍ ମଳୟ ଯାଏ ଗୋ ଛୁଇଁ
ଜୋଛ୍‌ନା ଜଳେ ପଖାଳି ପାଦ ସେ ଅସେ ଲାଜେ
ନୁଆଇଁ ମଥା । ୩ ।

ଗୁହଁଲେ ସେ ତ କମଳ ଫୁଟେ
ସବୁଜ ଖେତେ ସମୀର ଛୁଟେ,
ରୂପ ସାଗରେ ଖେଳଇ ତେଉ ହସଇ ଚନ୍ଦ୍ର
ପାଦପ ଲତା । ୪ ।

ଶେଫାଳି ସମ ଝରିଲେ ହାସ,
ନ ରହେ ପ୍ରାଣେ ବେଦନା ପ୍ରାସ
ଥରଇ କାଶ ସୁରଭି ଶ୍ୱାସ ଲୁଚଇ ଯେତେ
ପ୍ରୀତି ମମତା । ୫ ।

ଚମ୍ପଲ ମୋରି ମଧୁର ବାସ,
ଅଧରେ ଫୁଟି ମରଇ ହାସ,
ବଜନ ପୁଷ୍ପ ବଚହେ ତାର କି ଶମଶାନ
ଜାଣିବ କେତା ।୬।

[ ସୁବୁଲଅ, ୧୯୨୮ ]



## ଦୋଳ ପୂର୍ଣ୍ଣିମା

ଫଗୁଣ ପୁନିଅ ଚ୍ଛନ୍ଦ !
ବାନ୍ଧ ସଜନ ବାନ୍ଧ,
ପୀରତି ନିବିଡ଼ ଭୁଜ ବନ୍ଧନେ
ଲୁପ୍ତ ହେଉ ଅବସାଦ !
ଫଗୁଣ ପୁନିଅ ଚ୍ଛନ୍ଦ ।

ବିଶ୍ୱ କଣ୍ଠୁ ଆଜ,
ସଙ୍ଗୀତ ଉଠେ ବାଜ !
ଏକାଇ ଛନ୍ଦ ଗୀତ,
ଆଦର ମମତା ପ୍ରୀତ !
ବିହ୍ୱଳ କବି ଗାଏ,
କଳ୍ପନା କାହିଁ ଧାଏଁ,
ଅନ୍ତରେ ପୁରି       ବାହାରେ ଖେଳଇ
ଜୋଛନାର ଆହ୍ଲାଦ !
ଫଗୁଣ ପୂନଅ ଛନ୍ଦ !

କେଉଁ ସକେ ଆଜ       ପରଶି ଗଲାଣି
ସ୍ୱେର ମଲୟର ବାଣୀ
ଶୂନ୍ୟେ ଭ୍ରମଇ       ଅମୃତ ପରି
ପିଅ ଗୋ ସଜନି ଜାଣି ।
ଜୋଛନା ପ୍ଲାବନେ       ସରଗ ମର୍ତ୍ତ୍ୟ
ପଡ଼ୁ ନାହିଁ କିଛି ଚିହ୍ନା
ମୁକ୍ତ ପବନେ       ଗଗନେ ଭୁବନେ
ନବ ବସନ୍ତ ପୂଜା !
ଗୋଲାପ ମଦିରା-ରାଗେ,
ତୁମେ ନବ ଅନୁରାଗେ,
ରଞ୍ଜିତ କର ପ୍ରାଣ,
ଆଣ ଗୋ ଅଧର ଆଣି,
ଦିଅ ବୋଲି ମୋର ଦେହେ,
ନବ ବସନ୍ତ ସ୍ନେହ !

ଅନ୍ତରଭର ବାସେ,
ମନ୍ଦ ମଧୁର ହାସେ !
ମାତି ଉଠୁ ପ୍ରାଣି ବିଶ୍ୱ ସଙ୍ଗତେ
ଭୁଲି ସଂଶୟ ବାଦ !
ଫଗୁଣି ପୂନିଅ ଚନ୍ଦ !
ଆଜି ଜୋଛନାରେ ଫୁଟିଛି ଗୋଲାପ
ଫୁଟିଛି ମଧୁର ମଲ୍ଲୀ
ଯୌବନ ବନେ ନବ-ବସନ୍ତ-
ଉତ୍ସବ ନୁହେଁ ଭଲ ।
ଭୁଲ ଭୁଲ ସବୁ ସଂଶୟ ଦୁଃଖ
ଆନନ୍ଦ ନିଅ ବରି !
କ୍ଷଣିକର ପ୍ରୀତି— ପୁଲକେ ନିଅ ଗୋ
ଜୀବନ ଅମର କରି !
ଉଙ୍କାଡ଼ କର ଗୋ ମାଧବୀ ଜୋଛନା
ନାହିଁ ଭୟ ପରମାଦ
ଫଗୁଣ ପୂନିଅ ଚନ୍ଦ ।
କୋକିଲ ଉଠଇ ଗାଇ,
ବକୁଳ ଗନ୍ଧେ ବାଇ.
ଚରଣେ ତା ଚପଳତା
ପୀରତି ମଧୁର ବ୍ୟଥା,
ସ୍ୱରୁ କଣଲମ୍ବେ ଲତା—
ପାଦପର ମାଦକତା ·
ଅଳଲନ ଆଜି କିଂଶୁକ ବନେ
ଗରବେ ତୋଳିଛି ମଥା !

ନାହିଁ ନାହିଁ ଅବସାଦ !
ଫଗୁଣ ପୂଜଅ ଗ୍ଦନ୍ଦ !
ବିଶ୍ୱର ନରନାରୀ,
ସକଳେ ଅମେ ଗୋ ଅଳି !
ବୃଦ୍ଧ ତରୁଣ ଯାବୀ,
ଉଠ ଅନନ୍ଦେ ମାତି !
ନବ ବସନ୍ତେ କବି,
ରଞ୍ଜିତ ବାଲ ରବି,
ଅହ୍ୱାନ କରେ ମଧୁ ଉତ୍ସବେ
ଖୋଲ ଗୋ ଦୁଆର ଖୋଲ !
ଅଜି ପୀରତିର ଦୋଳ ।

ଅସ ଗୋ ଅସ ଗୋ ଶିଶୁ,
ତୁମ ସଙ୍ଗୀତ ସିନ୍ଧୁ,
ଏ ମୋର କ୍ଷୁବ୍ଧ ପ୍ରାଣେ,
ଉଚ୍ଛୁଳ ଜୀବନ ଗାନେ,
ଘୋଷ ମରଣ ଭୟ,
ଅବହେଳେ ଅଜ ଜୟ ।
ମୁକ୍ତ କର ଗୋ ପ୍ରାଣ,
ଭର ବସନ୍ତ ଗାନ,
ମଞ୍ଜୁ କୁସୁମ ଗନ୍ଧ,
ମନ୍ଦ ମଳୟ ଛନ୍ଦ,
ଉଜ୍ଜ୍ୱଳ ଦିଗ ଭାଗ,
ଜୀବନ ଦେବତା ଜାଗ !

ନବୀନ କୁଞ୍ଜେ          ଶୁଭଇ କାହାର
ମନ୍ଦ ମୁରଲୀ ନାଦ !
ଫଗୁଣ ମୂନଅ ଗନ୍ଧ ।

[ ପୁରୁଲିଆ, ୧୯୨୪ ]

---

## ରାଜ-ଜେମା

ରାଜାର ତନୟା ସ୍ୱପ୍ନ ରାଜ୍ୟ
ସଙ୍ଗୀତେ ତାର ବାସ,
ଏଇ ପଥେ ଯାଉଁ ଆଲିଗଲି କେତେ
କୁସୁମ ଧବଳ ହାସ !
ନ ଥିଲା ତା ଅବକାଶ !
ତା ଦେହ ଗନ୍ଧେ ପ୍ରାଣ ମନ ବାଇ,
ସୁନ୍ଦ୍ରି ତରୁଣ ରହିଲା ଅନାଇ,
କହିଲା ଅଧୀର "ମୁଗଧ ମୁଁ ରୂପଠାରେଁ !"
କହିଲା ସେ "ନାହିଁ ନାହିଁ ।"
"ଫେରିଲେ କାହିଁକି ଅସ ?"
ନ ଥିଲା ତା ଅବକାଶ ।
ରାଜାର ତନୟା ଚାଲିଗଲେ ଯେବେ
ଖସିଲା ତା ଗଭା ଫୁଲ;
ତରୁଣ ମନ ଆକୁଳ !
ଅଧୀର ପରାଣେ ନେଲା ତା ଗୋଟାଇ,
ବକ୍ଷେ ଜଡ଼ି ସେ କହିଲାତ "ନାହିଁ,

ନାହିଁ ଅଉ ଏଡ଼େ ସୁନ୍ଦର ସମତୁଲ,
ଚିର ଅମୃତ ଏ ମୋ ପୀରତିର ଫୁଲ !"
କହେ ଜେମା ପୁଣି "କଣ୍ଠେକେ ପ୍ରୀତି କାହିଁ ?"
"ପୀରତି କୁସୁମ ନାହିଁ ।"
ରାଜଜେମା ଅହା ଫିଙ୍ଗି ଦେଲ ତାର
କନକ ନୂପୁର ଯୋଡ଼ି;
ତା ପାଦ ପରଶେ ଉପର ପରଶେ
ଉଜଳ ତାରକା କୋଟି !
ତରୁଣୀ ତା କରେ ଯତନେ ଖଞ୍ଜି,
କାହାରୁପ ଭାବେ ରହେ ସେ ମଜ୍ଜି,
ଜେମା କହେ "ଅଗୋ କନକ ବଳୟ କାହିଁ ?"
"ମଳିନ ଅଭାବେ ପୀରତି ଫୁଟଇ ନାହିଁ ?"
ମୁଗ୍ଧ ତରୁଣ ଗାଇଲା ତା ବୀଣା ଧରି,
ମାଧବୀ କାଣିଥେ ଅବା ଯଉବନ ଭରି;
ଗାଇଲା ଅମର ରୂପର ବିକାଶ,
ତୁମରି ସେ ଲୀଳା ତୁମରି ସେ ହାସ,
ଧନ୍ୟ ଆଜି ମୁଁ ଅସିଛି ଅତିଥି ତବ !
ଗାଇଯିବି ଗୀତ ସୁନ୍ଦର ଅଭିନବ ।
ହସି କହେ ଜେମା ଯାହିଁ,
"ବନ୍ଦୀ ମୁଁ ତୁମ ଠାଇଁ !"
"ନାଅ କବି ମୋର କଣ୍ଠର ଆଭରଣ !
କିଏ ଶିଖାଇଲା ସଙ୍ଗୀତ ବିମୋହନ ?"

[୧୯୨୯]



# ଆରତି

୧-　　ଅନ୍ତରେ ମୋର ଆରତି,
　　ତୁମ ଜୟ ମୋର ଭାରତୀ,
ତୁମରି ବିଜୟ　　ନିଶାଣି ଧରି ମୁଁ
　　ଲଭେଁ ଗୋ ପରାଣେ ଶକତି ।୦।
　　　　ଦୁଃଖେ ମୋର ଗୋ ମାଗେ ତୁମ ଦାନ,
　　　　ଅନ୍ଧାରେ କହେ ଗାଇବାକୁ ଗାନ !
　　　　ନିଃସ୍ୱ ହେଲେହେଁ　　ଛିନ୍ନ ପରାଣି
　　　　　　ଅରପେ ବିନୟ ଭକତି ।
　　　　　　ଅନ୍ତରେ ମୋର ଆରତି ।୧।
　ଏ ମରତେ ନାହିଁ ସଦ୍ମ ମୋର ଥାନ,
　କାହା ମନ୍ଦରେ ନାହିଁ ଆସନ,
ଅଛୁ ପ୍ରିୟ ତବ　　ପ୍ରୀତି ଆହ୍ୱାନ,
　ହେ ମୋର ଜୀବନ ମୁକତି ।
　ଅନ୍ତରେ ମୋର ଆରତି ।୨।
　　　　ଶାନ୍ତ ତଟିନୀ ଅନାଏ ଗଗନେ,
　　　　ସନ୍ଧ୍ୟା ତାରକା ନଭ ଅଙ୍ଗନେ,
　　　　ନୀରବ ମୁଗଧେ　　ତୀର ତରୁ ସମ
　　　　　　ପଥରେ ଚାଳିବା ପ୍ରଣତି !
　　　　　　ଅନ୍ତରେ ମୋର ଆରତି ।୩।



୨— ଯହିଁ ଫେରେ ମୋର ଦୃଷ୍ଟି,
ତୁମର ରୂପର ସୃଷ୍ଟି !
ଜୀବନ ଦେବତା ତୁମର ପ୍ରକାଶ,
ମୁକ୍ତ ଆକାଶ ଝୁରୁ କାଶ ହାସ !
ଜୀବନର ଯେତେ ବିଫଳ ପ୍ରୟାସ
ବେଦନା ତୁମର ତୁଷ୍ଟି;
ଏ ସକଳ ଦେଖ ମୋର ଚିର ନିଠ
ତୁମର ରୂପର ସୃଷ୍ଟି ।୧।

ପ୍ରଭାତ ଆଲୋକ ଯାଏ ଗୋ ମିଳାଇ,
ପ୍ରାନ୍ତର ବନ ନଦୀ କହେ ଯହିଁ
ନାହିଁ ଗୋ ଦେବତା ଦୈନ୍ୟ ଗ୍ଲାନି
ଅତୀତ ଜୀବନ ସ୍ମୃତି।
ମୋ ଜୀବନ ପୂଜା ମଳିନ କୁସୁମେ
ତୁମର ରୂପର ସୃଷ୍ଟି !।୨।
ମିଳନ ପ୍ରଥମ ଅସ୍ଫୁଟ ହାସ,
ମରଣର ବ୍ୟଥା ବିଚ୍ଛେଦ ତ୍ରାସ,
ଚଲି ଯା ତା ଲାଗି କାହିଁକି ପ୍ରୟାସ ?
କାହିଁକି ଲୋତକ ବୃଷ୍ଟି ?
ଜୀବନ ସଙ୍ଗେ ପ୍ରୀତି ଆନନ୍ଦ
ଢାଳି କର ରୂପ ସୃଷ୍ଟି !।୩।



୩— (ସେବେ) ଅନ୍ତର ଗାଏ ସବୁ ଅସିଲଣି ବେଳ,
ଯୁଗଳ ପରାଣ ଦେଖି ଲଗାଅ କି ଖେଳ ?
ପ୍ରୀତିରେ ପରାଣ ଆହା ଦିଅ ଭରି,
ଅନ୍ତର ବୀଣା ଧୀରେ ଉଠେ ଥରି,
ବନ୍ଦେ ଗୋ ମୋର ଅବନତ ହୁଏ ଶିର ।
ହେ ମୋର ଦେବତା ତାଙ୍କ ଅଶ୍ରୁ ନୀର !
ମିଳନର ସ୍ୱରେ ବିରହ ଗୋ ଯାଏ ମିଳି,
ଜୀବନ ସ୍ପର୍ଶେ ମୃତ୍ୟୁ ହୁଅଇ ଲୀନ ;
କି ମଧୁରେ ଡାକ ବସିଲେ ଦୁଆର କିଳି
ଅମା ଅନ୍ଧାର ଭେଦି ହସେ ଶୁଭଦିନ !
ଗାଏଁ ଜୀବନର ଗାଥା;
ହେ ମୋର ଜୀବନ ଦାତା !
ତୁମରି ଆଲୋକେ ବିକଶୁ ଜୀବନ
ଶୁଭ୍ର କମଳ ସମ,
ତୁମ ବିଶ୍ୱାସେ ଦୁଃଖ ଦୈନ୍ୟ
ସହିବାରେ ହୁଏ କ୍ଷମ ।
ଜୀବନ ନିକଟେ ନିଅ ମୋତେ କହି
ହେ ମୋର ଜୀବନ ପ୍ରିୟ !
ଆଜ କି ଆଦେଶ ଦିଅ ?
ନାହିଁ ସଂକୋଚ, ନାହିଁ ନାହିଁ ଭୟ,
ତୁମରି ପ୍ରୀତିରେ ପରାଣ ବିଳୟ,
ଜାଣେ ମୁଁ ଜୀବନ କରିବାକୁ ଅରପଣ;
ଅଜ୍ଞାତେ ମୋର ଏ ସକଳ ଆୟୋଜନ !

ଦିଅ ଗୋ କର୍ମ ଭାର;
ତୁମର ଆଜ୍ଞା ସାର !
ପବିତ୍ର କର ସୁନ୍ଦର କର
ଏ ମୋର କ୍ଷୁବ୍ଧ ପ୍ରାଣ !
ସକଳ କର୍ମେ ଗାଏ ମୁଁ ତୁମର ଗାନ !
ତୁମର ଯୋଗ୍ୟ କରି ନିଅ ମୋତେ
ଦିଅ ଗୋ ତୁମର ଦୀକ୍ଷା
ଜୀବନ ସଙ୍ଗେ ଶତ ଆନନ୍ଦେ
ଏତିକି ମୋହର ଭିକ୍ଷା ।
[ ଡିସେମ୍ବର, ୧୯୨୯ ]

୪— ଆଜି ଦେବ ବୋଲି କେଉଁ ଦୀକ୍ଷା,
ଲଗାଇଲ ଏ ପରୀକ୍ଷା ?
ହେ ପରମ ପ୍ରିୟ ଅନ୍ତରତମ
ମାଗିବାକୁ ଆଜି ଭିକ୍ଷା ?
କେତେ ରୂପେ ଭାବେ ନେଉଛ ପରଖି,
ଦୁଃଖ-ଆକୁଳ ପଡ଼େଁ ଯେବେ ଥକି,
ଦୈନ୍ୟେ ମାଗିଛ ଜୀବନର ଦାନ
ମୋ ଜୀବନ ପ୍ରତିପାଳକା !
ଲଗାଇଲ କି ପରୀକ୍ଷା !
ନିହ୍ଣା ବାତ୍ୟା ଏ ଜୀବନେ କେତେ
ବିକଳ କରୁଛି ପ୍ରାଣ,
ଅଟୋ ଚରନଠ ଅନନ୍ଦ ହାସେ
ଗାଇବାକୁ କହୁ ଗାନ !

ପରଶେ ପରଶ ଦିଅ ଗୋ ମିଳାଇ,
ସେନେହ ପ୍ରୀତିରେ ଦୁଃଖ ନଥ ନାହିଁ,
ଅଶ୍ରୁ-ଅତୁଳ-ପରଶି ବିନୟେ
କରେ ତୁମର ପ୍ରତୀକ୍ଷା !
ତୁମର ଇଚ୍ଛା ପୂର୍ଣ୍ଣ କର ଗୋ
ଏତିକି ପଦ୍ମରେ ଭିକ୍ଷା ।

[ ଡିସେମ୍ବର, ୧୯୬୯ ] ——————

୫—

ରୁଦ୍ର ହେ ମୋର ପ୍ରିୟ,
ଅଶ୍ରୁ ବେଦନା ଦିଅ !
ମରଣ ସମାନ ଅସୁ ଘନ ଘୋଟି,
ବକ୍ଷ ପରଶି ହେଲେ ଯାଉ ଲୋଟି,
ସିତ ଉପହାରେ ପଡ଼ୁଛ ପଦତଳ !
ଜୀବନର କୂଳେ ରହି—
ତୁମ ଜୟ ଯିବ ଗାଇ ।

ତରଙ୍ଗ ଅସିଲେ ଶତେ ଅଗଣିତ
ବକ୍ଷ ମୁଁ ଦେବି ପାତି
ଅଟଗା ଦରିଦ୍ର ସାଥି !
ଅନେକ ବନ୍ଧୁନେ ଖୋଜୁଅଛି ଯହିଁ
ଅମା ଅନ୍ଧାର ରାତି !
ତୁମରି ପିରତି ଭରସା ମୁଁ କରି,
ଅକୂଳ ସାଗରେ ବାହି ନେବି ତରୀ
ଯେତେ ରୂପେ ଅସ    ସୁନ୍ଦର ଶିବ
ମୋର ଚିର ବରଣୀୟ ।
ରୁଦ୍ର ହେ ମୋର ପ୍ରିୟ ।



୬— ପ୍ରଭାତ ଆଲୋକେ ସୁନ୍ଦର ପ୍ରତିଭାତ !
ଚିର ଅମୃତ ହେ ମୋର ଜୀବନ ନାଥ ।
ଜୀବନ ସହିତେ ଜଡିଲ ହେ ଥିର
ମଳୟ ପରଶେ କୁଶଳୟ ସିର !
ଅମୃତ ଶତଦଳ ।
ନିଅ ମୋ ଅଶ୍ରୁ ଜଳ ।
ପ୍ରଭାତ ସହିତେ ସକଳ ସୃଷ୍ଟି ବନ୍ଦେ,
ତଟିନୀ ଆକାଶ ନିତ୍ୟ ନବୀନ ଛନ୍ଦେ;
ଭ୍ରମର ପୟରେ ଜୀବନର ଜୟ ଗାଏ,
ନୀଳ ପରବତ ମୁଗ୍‌ଧ ନୟନେ ଚ୍ଛହେଁ !
ନାବିକ ଚଳାଏ ତରୀ
ତୁମ ଜୟ ଗାନ କରି !
ପୂରୁବ ଗଗନେ ଗାଏ ତବ ଜୟ ସୂର୍ଯ୍ୟ,
ମଳିନ ମୃତ୍ୟୁ ତବ ପଦତଳେ ପୂଜ୍ୟ ।
ରୌଦ୍ରେ ଅଜ ପୂର୍ଣ୍ଣର ଏ କି କାନ୍ତି !
ଏକି ଗୋ ମାଧୁରୀ ଶାନ୍ତି !
ତଟିନୀ ବକ୍ଷେ ଶାନ୍ତ ସୁଷମ ଛବି !
ତେସନେ ପୂର୍ଣ୍ଣ ସ୍ୱରୂପ ରହିବି ଚ୍ଛହିଁ ;
ଦେବି ମୋ ମୁକ୍ତ ପ୍ରାଣ,
ଚିର ଦରିଦ୍ର କି ଦେବି ମୁଁ ପ୍ରତିଦାନ ?



୬— ଜୀବନ ପଥ ଯେବେ ଯାଏ ସରି
ଅକୂଳ ବେଦନାରେ ବୁଲେଁ ଏକା,
ବନ୍ଧୁର ପ୍ରାଣ କା'ର ରସେ ମଜି
ଖୋଜିଲି ହେବ ବୋଲି ଥରେ ଦେଖା !
ଖୋଜିଲି ପର୍ବତର ଶାଳବନ
ଶଇଳ ନଦୀ କୂଳ ଧାନ କ୍ଷେତ,
ଶୂନ୍ୟ ଜନପଦେ ସମୀରଣ
କି ଭାଷା କହିଯାଏ ଜାଣେ ସେତ ।
ଦିବସ ଶେଷେ ରବି ଯାଏ ବୁଡ଼ି
ଯାଏ ସେ ଉଡ଼ି ବାସେ ମୂକ ପକ୍ଷୀ,
ପଶ୍ଚିଣ ଚାଏ ମୁଁ ଟିକେ ପଥ ଛୁଡ଼ି
ଜୀବନ ପଥେ ଏକା ଗଲି ଥକି ।
ଛୁଡ଼ିଲେ ଛୁଡ଼େଁ ପଛେ କି ଶୋଚନା ?
ଦେବ କି ନାହିଁ ଥାନ ଟିକି ଲତା ?
ଶତ ଲୋତକ କରି ବରଷଣି
ଏ ଦେଶେ ଢାଳି ଦିବି ମୋର ବ୍ୟଥା ।
ମୂକ ଶଇଳ ଏଥି ରହି ଚାହିଁ,
ଶାନ୍ତ ଏ ଆକାଶ ବିମୁକତ;
ଭାବନା ପ୍ରାଣେ ଆଜ କାହିଁପାଇଁ
ରଚିବି ମୋ ସପନ ଏଥି ଶତ ।
ବିରଚି କୁଟୀରଟି ବିରୋଳରେ
ବନ୍ଧୁ ପଥ ମୋର ଥିବି ଚାହିଁ,
ସନ୍ଧ୍ୟା ଗୋଧୂଳିର ଆଲୋକରେ
ନିତି ଏ ପଥେ ଯାଏ ବୀଣା ବାଇ ।

ସଂଗ—

ସୁଦୂର ପଥିକ ଗୋ ନାହିଁ ଦେଖି ?
ଭୂଷଣ ଶିଖାହୀନ ରୂପ ତାର ?
ଲୁହ ରକତେ ପ୍ରୀତି ଯାଏ ଲେଖି,
ସୃଷ୍ଟି ବ୍ୟଥା ତାର ଗଳାହାର ।
ମନ୍ଦହାସେ ପୁଣି ତା ଅଧର
ଥରନ୍ତି ପ୍ରଣୟ କି ଅନୁରାଗେ ?
ଫୁଟଇ ଅମର ଗୀତ ଜୀବନର
ଫୁଟେ କମଳ ଶତ ଦଳ ରାଗେ ।
ଧନ୍ୟ ହୁଏ ନିଖିଳର ବ୍ୟଥା
ଙ୍ଖ୍ ଝରର ତାର ଜାହ୍ନବୀ,
ଶାନ୍ତି ସଗରର ମାଦକତା
ବହୁ ସେ ନିତି ଆଁସେ ମୋର ଭବ !



୮— ମଧୁ ମଳୟର ଦ୍ୱାରେ,
ସୁନୀଳ ତଟିନୀ ଧାରେ,
ନିରେଖିଲି କାର ଶୁଭ୍ର ମୂରତି,
ଶନଦେ ପରଶି ଢାଳିଲି ପ୍ରଣତି,
ଗାଇଲି 'ହେ ମୋର ଅରୂପ ଶକତି
ଅଜି ତବ ଅଭିସାରେ—
ଆସିଛି ବଧୂର ପ୍ରଣୟିନୀ ତବ
ସୁନୀଳ ତଟିନୀ ଧାରେ !
ମଧୁ ମଳୟର ଦ୍ୱାରେ ।

ଶୁଣିଛୁ ଅଳି ଗୋ ସ୍ନିଗ୍ଧ ସେ ଡାକ,
ତରୁ ମର୍ମରେ ! ମୁହିଁ ନିର୍ବାକ,
ଚୁହିଁଛି ସୁଦୂରେ କି ଭରସା ରଖି
ଗଳିତ ଅଶ୍ରୁଧାରେ,
ମଧୁ ମଳୟର ଦ୍ୱାରେ ।

ଡାକ ପୁଣି ମତେ ବସନ୍ତ ସଖା,
ଭୁଲେଁ ଅବହେଳେ ମୃତ୍ୟୁ ଶଙ୍କା;
ସକଳ ମଳିନ କୁତ୍ସିତ ଭୁଲି,
ତଟିନୀ ପରି ମୁଁ ପଲ୍ଲବ ଉଚ୍ଛୁଳି,
ସୁନ୍ଦର ତବ — ରୂପ ରସେ ମଜି
ଯାଉ ମୋ ଚିତ୍ତ ପୀରତିରେ ହଜି
ଅଳି ! ଏ ତଟିନୀ ଧାରେ,
ମଧୁ ମଳୟର ଦ୍ୱାରେ !

ଅଦୂରେ ଶୋଭଇ ଅମ୍ର ମୁକୁଳ,
ତା ସମ ପରଶ କଲା କେ ଆକୁଳ ?
ଜଡ଼ିତ କର ଗୋ ପ୍ରେମ-ଦୁକୂଳ
ବିରହିଣୀ-କବି-ଅଙ୍ଗେ;
କୁସୁମର ଆଶା ଭର ଏ ଚିତ୍ତେ
ମରଣକୁ ଭୁଲେଁ ଏ ରୂପ-ଗୀତେ,
ସ୍ୱଚ୍ଛ ପୂତ ପ୍ରୀତି-ସଙ୍ଗୀତେ
ଅମର ମନ୍ତ୍ର ସଙ୍ଗେ !

ବହ ଗୋ ବହ ଗୋ ମନ୍ଦ ପବନ,
କହ ଗୋ କାନ୍ତ ଶୈଳ କାନନ,

ରହ ନା ନମେଘେ ଭାସମାନ ତରୀ,
ଅକୂଳତା ଭର ଯାଏଁ ମୁହୂଁ ମର,
କ୍ଷୁଦ୍ର ଲହରୀ ତଟିନୀରେ ଡୋଳ,
ଛୁଟିଛ କା ଅଶେ ପାଲ୍ ଦେଇ ଖୋଲି ?
ମିଳିବ କି ତାର ଦେଖା ?
ପାଇଛ ତା ପ୍ରୀତି ଲେଖା ?
ଯିବ ମୁଁ ତା ଅଭିସାରେ !
ଡାକିଲେ ସେ'ବା ଅକୂଳକଣ୍ଠେ
ମଧୁ ମଳୟର ଦ୍ୱାରେ !

———

୯—ପଞ୍ଚମ ପବନରେ ପାଦପ ଲତା ଆଜି ଧରିବ,
ଛାଡ଼ିଲେ ପୁରାତନ ବେଶକେ ଛାଡ଼ିବି ମୁଁ ଗୋ ଗରବ;
ଆଶା ବାସନା ରଙ୍ଗ
ସକଳ ତେଜି ଅଙ୍ଗ,

ତୁମରି ଦୁଆରେ ମୁଁ ଜୀର୍ଣ୍ଣ ତରୁସମ
ଏଡ଼ି ମୋହ ଭରମ ରହିବି,
(ତୁମ) ପୀରତି ରାଜସଭା ଆସନ ତଳେ ଉଭା
ହୋଇ ମୁଁ ବନ୍ଦନା ଗାଇବି ।
ତଟିନୀ ପୂରାଇଲେ ସ୍ନାହାନ ସମାପନ
ସାଧି ସହଜେ ତୁମ ଧିଆନେ ନିମଗନ;
ସନ୍ଧ୍ୟାସମ ପ୍ରଭୁ ରହିବି ପଥ ଚାହିଁ
ଉଖାରି,
ଯେବେକାଳେ ହରଷରେ ପ୍ରତୀଚୀ ଗଗନରେ
ବିହଗେ ଯାଉଥିବେ ବାହାରି ।

—୯୬

ଅସ୍ତ ତପନକୁ ଡେକାଲେ ଗୃହିଂ ଗୃହିଂ,
ସ୍ୱପ୍ନଲୋକେ ତମ୍ଭ ନାହିଁକ ଯିବ ବାନ୍ଧି,

ଗନ୍ଧ ଉପବନ୍ତୁ କୁସୁମ ସୁବାସିତ ଡୋଳିବ;
ଅରଣ୍ ଲଗି ତବ ଅଶ୍ରୁ ପସରିଛି ଖୋଲିବ।

[୧୯୨୯]



## ଉଷସୀ

ପ୍ରଥମ ମିଳନବାସେ,
ମିଳିଲ ହେ ଧନ ହୃଦୟ ଦୁଆରେ
ଉଷସୀ ଅଲୋକ-ହାସେ ।

ଭାଳିଲି ତୁମେ ସେ ତରୁଣ ସପନ,
ସ୍ପନ୍ଦନ କର କୁସୁମ କାନନ,
ମୋ ମନ ବହନ, ବଡ଼ ଅଶୋଭନ—
ଚଳାବ ଆପଣା ପଥେ;
ନନ୍ଦନ ସୁର-ରଥେ ।

ଭାଳିଥିଲି ତୁମେ ସନ୍ଧ୍ୟା ତାରକା,
ହେମ କୁରଙ୍ଗୀ ହୃଦୟର ଦକା,
କାଙ୍କ୍ଷୀ ତେଜ ଅସିଛ ଅଳକା
ଲଗାଇବ ବୋଲି ମାୟା;
ତୁମେ ମରୀଚିକା ଛାୟା !

ଅଥବା ପ୍ରଭାତ କାସାରେ କମଳ,
ଘନ ନୀଳକଇଁ କୁନ୍ଦ ଧବଳ,

ବିଜୁଳି ଛଟକେ     କାନ୍ତ ଚପଳ—
ଯିବ ବୋଲି କ୍ଷଣେ ଅସ୍ତ,
ତରୁଣ ଜୀବନେ     ନାନା ରୂପେ ଭବେ,
ଭ୍ରମର ଲୀଳା ସମସ୍ତ ।
ଅଞ୍ଜନ କଳା ଖଞ୍ଜନ ଆଖି,
ସ୍ୱପ୍ନ ତରୁଣୀ ଦେଲା ଯେବେ ଡାକି
ଅନ୍ତର ମୋର     ଗରଳକୁ ଘୃଣି
କହିଲା "ନାହିଁ ଗୋ ନାହିଁ"
"ଜୀବନର ଶେଷେ     ନବ ଆୟୋଜନ
କର ଅବା କାହା ପାଇଁ ?"
ମନ୍ଦେ ହସିଲା, ଗୁହାଳି ଅଳପ,
ନନ୍ଦନ-ଫୁଲ-ବୃଷ୍ଟି-କଳପ,
ଅବାଧେ ପ୍ରଭାତ     ମନ୍ଦ ଅଲୋକ
ତ୍ରିଭୁବନ ଯାଏ ଛୁଇଁ,
ଚମକି ଉଠିଲି     ଯେସନେ ତଟିନୀ
ସୁରଭି-ମଳୟ-ଛୁଇଁ ।

କହିଲି ମୁଁ "ନାହିଁ ନାହିଁ"
"ଯୌବନେ ଅଙ୍କ ଏ     ପୀରତିର ଦୋଳ
ଲଗାଇବ କାହିଁପାଇଁ ?"
ନୀରବ ହେଲା ସେ ସ୍ୱପ୍ନି !
ଦୂର ଦେଶେ ଗଲା ଯାଇ !

ବହିଲା ଜୀବନେ କର୍ମର ବାୟୁ
ସରିଲା ତରଣୀ ସରିଆସେ ଆୟୁ

ଦେଖିଲି ଅଶ୍ରୁ ଅଜନ୍ଦ ଗ୍ରହୁଁ —
ତରୁଣ ଚନ୍ଦ୍ର ଗୋଟି,
କି ଅବା ତାରକା କୋଟି !

ମଳିନ ପଙ୍କିଲ ବାସନା-ବିଳାସ
ଛିନ୍ନ ସକଳ ପୀରତିର ପାଶ
ପରଶେ କାହିଁକି   କରେ ଉପହାସ ?
କାହିଁ ପୂର୍ଣ୍ଣିର ଛବି ?
ପଶ୍ଚିମେ ବୁଡ଼େ ରବି !

ଫେରିଲେ ବିହଗେ ବଳାକା ଆକାଶେ
ତଟିନୀ ତୀରେ ମୁଁ ରହିଛି କା ଆଶେ
ବାଲିଗି ଶୂନ୍ୟ   ମନ୍ଦିର ପ୍ରାସେ
ପୂରିଛି, କାହିଁବା ମୁକ୍ତି ?
ଦେବ କିଏ ଆଜି ଯୁକ୍ତି ?
ଗୋଧୂଳି ଆଲୋକେ ପୁଣି ଛବି କାର
ଝଲଇ ? ନାହିଁ ଟୋ ତରଳେତ ବିକାର,
ସୁନ୍ଦର ପୂତ   ଶୁଭ୍ର ଅପାର
ବାସନା ବସନ ତେଜି
ପଦ ସଞ୍ଚାରେ   ସଙ୍ଗୀତ ତୋଳି
ଆସକେ ନ ପାରେଁ ହେଜି !
ଦେଖିନି ଏସନେ ପୂତ ମୂରତି
ଅନ୍ତରୁ ଅସେ ପୂର୍ଣ୍ଣ ଭକତି
ପୀରତି ଅଶ୍ରୁ   ଶ୍ରଦ୍ଧା ପ୍ରଣତି
ଭିଳେଁ ଅଜି ଦେବି ଢାଳି,
ବୃଥାଯାଏ ଦିନ ଭାଳି !

କହିଲ ହେ ଦେବୀ ଅପୂର୍ଣ୍ଣ ମୁହିଁ,
ପୁଣ୍ୟ ପରଶେ ଯାଅ ଥରେ ଛୁଇଁ,
ସୂର୍ଯ୍ୟ ସମାନ ତୁମେ ଅନ୍ଧ ତଇଁ
ନାଶ ଗୋ କାଳିମା ରାଶି;
ପୁଣ୍ୟ-ପୀରତି-ସଙ୍ଗୀତ-ପରକାଶି ।

ଏ କି ଅଦ୍ଭୁତ ଦେଖେଁ ଆଖି ମେଲି,
ବିଶ୍ୱାସ ନୁହେଁ, ପାରୁ ନାହିଁ କଳି,
କିଏ ପୁଣି ତୁମେ ବିରଚିଲ କେଳି
ଶୁଣୁଁ ଏକି ନୂଆ କଥା ?
ପୁଣି ଅଜାତ ମମତା !

ପରକାଶ ପୁଣି ବାସର ଯାମିନୀ ହାସ
ଅନ୍ଧକାର-ପ୍ରୀତି ଦୂର ଜୀବନର ପ୍ରାସ
ସେ ଦିନର ମାୟା ଆଜି ଜୀବନର ତ୍ୟାଗ !
ତୁଷାର ଶୁଭ୍ର ଅମୃତ ଅନୁରାଗ !

[୧୯୨୯]



## ଅଳକା

ଯେ ଦେଖେ ନୀଳ ତଟିନୀ ଜଳେ
ଯାଉଛି ଭାସି ସପନ ତରୀ;
ଯେ ଦେଖେ ରାତି ଲଜ୍ଜାବତୀ
ଦିବସ ଦେଖୁଁ ପଳାଏ ଥରି;
ପାଦପ ମୋହେ ଯେ ଦେଖେ ଲତା,
ନ ସହି ପ୍ରୀତି ଯୋହାଗ ବ୍ୟଥା,

କୁସୁମ ଡାଳି ପଡ଼ଇ ଢଳି
ଫଗୁଣେ ନବ ମୀରଢ ପର
ଯାଉଚ୍ଛି ଭାସି ସପନ ତଟ୍ଟ ।
ଯେ ଦେଶେ ଭରା ମଳୟ ଶ୍ରେଉର
ଫୁଲ ପରାଗ ଯାଏ ଗୋ ବୋଲି,
ପୀରତ୍ତ ଦୋଳେ କାମିନୀ ଜନ—
ଉତ୍କଣ୍ଠ୍ୟ ଯାଏ ଗୋ ଖୋଲି;
ଚଞ୍ଚଳ ଲାଜେ ନୁଆଁଇ ଅଖି,
ବାନ୍ଧେ ପ୍ରିୟା ପୀରତ୍ତ ରାଖି,
ନାଗରୀ ଭୂଇଁ ପ୍ରଣୟୀ ମୁହଁ
ଚୁମ୍ବନଟି ଯାଏ ଗୋ ତୋଳି,
ଉତ୍କଣ୍ଠ୍ୟ ଯାଏ ଟୁଗୋ ଖୋଲି ।
ମୁକୁଳ ମଦେ ମୁଗ୍ଧ ପିକ
ପ୍ରିୟାରେ ଡାକେ ଅକୁଳ ଭରେ,
ଚପଳଖେଳା ଖଞ୍ଜରୀଟ
ଲଗାଇ ଭ୍ରମ ନୃତ୍ୟକରେ;
ସ୍ନାହାନ ରତା ନବ ତରୁଣୀ,
ଚକିତେ ବ୍ୟଥା ଲଭଇ ପୁଣି,
ଖସଇ ବାସ ସରମ-ହାସ
ଯାଏ ଗୋ ଭାସି ତଟିନୀ ଜଳେ ।
ପ୍ରିୟାରେ ଡାକେ ଅକୁଳଭରେ ।
ଯେ ଦେଶେ ନୀଳ ଶଇଳ ମାଳ
ଆକାଶେ ତୋଳି ରହଇ ମଥା;
କୁଢ଼ଇ ରବ ଅକୁଳ କବ
ଯେ ଦେଶେ ମୁହଁ କହେ ତା କଥା ।

ସେ ଦେଖେ କ୍ଷୀଣ ମଳିନ ଶଶୀ,
ଶୂନ୍ୟ ଗଗନେ ଯାଏ ଗୋ ଲସି,
ସେ ଦେଖେ ପ୍ରିୟା ଅକୁଳ ହୁଅ
ମୋ ଲାଗି ଗୁହାଁ ଚାଲଇ ବ୍ୟଥା
ଅଶ୍ରୁଭରେ ନୁଅଁ ଏ ମଥା !
କାନନ ମୃଗ ତଟିନୀ ତୀରେ
ସଜଳ ନେତ୍ର କାହିଁକି ଥରେ ?
ଶୂନ୍ୟ କୁଞ୍ଜେ ବଧୂର ପ୍ରିୟା—
ମୃଗନୟନୁ ଅଶ୍ରୁ ଝରେ;
ମଳିନ ବେଶ ଶିଥିଳ କେଶ,
କରେ ବଳୟ ଦିଏ ଗୋ କ୍ଲେଶ,
ଫଗୁଣ ରାସ ମନ ଉଦାସ !
ମରମ ବ୍ୟଥା ମରମେ ମରେ
ସେ ଦେଖେ କବି ନୀରବେ ସ୍ମରେ ।
ବିଚ୍ଛେଦେ ତା ଅଳସ ଗତି
ମଳିନ ଆଖି ଅଶ୍ରୁଭରା,
କଣ୍ଟକିତ କୁସୁମ ଶେଯ
ଶୂନ୍ୟ ଦିଶେ ଫଗୁଣ ଧରା !
ମୋ ରଜନୀ ଜାଗର ଜାଳି,
ଦିବସ ଜାଗେ ମିଳନ ଭାଳି,
ଲେଖଇ କବି ଅଶ୍ରୁରେ ତା
ସୁଦୂର ଦେଶେ କାବ୍ୟ ପରା ?
ଶୂନ୍ୟ ଦିଶେ ଫଗୁଣ ଧରା ।



## ଯକ୍ଷର ଶୋଚନା—

ସୁଦୂର ମୋର କାନନ ଭୂଇଁ
ବରଜ୍ଞ ଅସି ଭରମେଁ ଦୂରେ,
ସେ କେଉଁ ମାୟା ହରିଣୀ ପଛେ—
ମରଣ ଅବା ! ନରତେ ଘୂରେଁ ।

ଶଇଳ ବନ ଶ୍ୟାମଳ ଲତା,
ନୀରବେ ଢାଳେ ପରାଣି ବ୍ୟଥା,
ଏ ଦେଶ ମରୁ ଜୀବନ ହୀନ !
ଏକାକୀ ମରେଁ ପରାଣ ପୁରେ ।୧।

ଜନମ ଭୂଇଁ ଘେରନ୍ତୁ ନାଈ
ନଉକା କେତେ ଯାଏ ଟୋ ଭାସି,
ପ୍ରିୟ ଜନର ବାର୍ତ୍ତା ବହି
ବାରହେ ପୁଣି ଅଶ୍ରୁ ରାଶି ।
ସେ ଦେଶ ଛାଡ଼ି ଅଇଲି ମୁହିଁ,
ପୀରତ ହୀନ ଏ ମରୁ ଭୂଇଁ,
ଶୁଣିବି ପଦେ ସେନେହ କଥା
ଭରସା ନାହିଁ ଏ ଦେଶେ ଅସି ।୨।

ସନ୍ଧ୍ୟା ହେଲେ ବୁଡ଼ିବେ ରବି
ନିଶୂନ ହେବ ଆକାଶ ମଝୁ;
କୁଳ କାମିନୀ ତଟିନୀ ତୀରେ
ପିବେଣି ଜଳେ କଳସୀ ବହୁ ।

ଅଳସ ଗତି ନୂପୁର ଧ୍ୱନି
ପରିହାସେ କି ହସେ ଅବନୀ
ଗୋପ ବାଳକ ମୁରଲୀ ଧ୍ୱନି
ଦୂର କାନନୁଁ ଶୁଭଇ ଚହ୍ନି;
ସଙ୍ଗିନୀଗଣ ଗହଳେ ପ୍ରିୟା
ଫିରନ୍ତି ଜଳେ କଳସୀ ବହି । ୩ ।

ଟ୍ଟେର୍ ମଳୟ ଅଧୀରେ କେତେ
କାନନେ ବନେ ଫିରନ୍ତି ଭୁଲି,
ମର୍ମରବେ ପାଦପ ଲତା
ବହଗେ ଗୀତେ ସଙ୍ଗଲେ ଦୁଲି ।
ଜଡ଼ିତ ମୋର ପରାଣି ଭାଷା,
ସବୁ ସାଧନା ସକଳ ଆଶା,
ସେ ଦେଶ ମୋର ପରାଣ ପ୍ରିୟା
ମୋ ପଥ ଚାହିଁ ପଡ଼ିଛି ଢଳି;
ଦିବସ ଯାଏ ମୋହିତ ମାୟା—
ହରିଣୀ ପଛେ ଭରମେ ଭୁଲି । ୪ ।



## ବିରହ ପୂର୍ଣ୍ଣିମା

ଫଗୁଣ ନିଶାରେ ଅନ୍ତର ପ୍ରିୟେ
ରହିଥିଲି ମୁଁ ଗୋ ଚାହିଁ;
ବିରହିଣୀ ତୁମ ପାଇଁ ।

ତୃଷିତ ବ୍ୟାକୁଳ ଚିତ୍ତ ଅଧୀର,
ଖେଳିବାକୁ ତୁମ ସହିତେ ଅବୀର,
ଚାହିଁ ନୟନରୁ ଶୁଖିଗଲେ ନୀର
ପ୍ରୀତି ଋତୁ ଗଲା ପାହି;
ନୀରବେ ରହିଲି ଚାହିଁ ।
ପ୍ରଣୟିନୀ ତୁଲେ ଖେଳିଲେ ପ୍ରଣୟୀ
ଅକୁଳ ଜୋଛନା ମଝି,
ମଲ୍ଲି ବକୁଳ ରଜନୀଗନ୍ଧା
କାନେ କବା ଦେଲେ କହି ।
ନ ପାରିବା ଘରେ ରହି,
ମାଧବୀ କଣିଟିଏ ସହି,
ମହୁଆଳିଆ କଲା ଦକ୍ଷିଣା ବାଆ
ଅନ୍ତରେ ଅଜବ ବହି ।
ହସିଲେ ଚନ୍ଦ୍ର, ହସିଲେ ତାରକା
କୁଳବଧୂ ଭୁଲିଗଲେ ଲାଜ ଦାକା
ମର୍ତ୍ତ୍ୟ ହେଲା କି ମିଳନ-ଅଳକା
ବିଚ୍ଛେଦ ତଳେ ନାହିଁ ।
ମୋ ହୃଦ ଯମୁନା ଶୂନ୍ୟ ପୁଳିନେ
ନ ବାଜିଲା ଥରେ ବେଣୁ,
କାଠର ପୀରତି ଯେଣୁ ।
ଯୌବନ ମୋହେ ମତ୍ତ କାମିନୀ
ବୋଳିଲେ ଲୋଧ୍ର ରେଣୁ ।
ଗାଇଲେ ହରଷେ ଗୀତ,
ହାଯ ରସେ ପୁଲକିତ,

ପ୍ରୀତି ଅଶା ପ୍ରାଣେ ଭରି,
ଏକା ମୁଁ ରହିଲି ପଡ଼ି ।

× × ×

ପରାଣି ବନ୍ଧୁ ତୁମେ ମୋର ପରା ?
ସକଳରୁ ପ୍ରିୟ ଦୁଃଖ ପାଶୋରା ?
ପାଣେ ଥାଇ କପାଁ ଦିଅ ନାହିଁ ଧରା
ତୁମ ପ୍ରୀତି ଗୀତି ଗାଇ,
ଦିବା ନିଶି ରହେ ଚାହିଁ ।

× × ×

ପଡ଼ି ରହିଲା ମୋ ଦୀପ୍ତ ଅମ୍ବର
ହେ ମୋର ହୃଦୟ ରାଜ
ମଳିନ ହେଲା ମୋ କୁସୁମ ଶଯ୍ୟା
କର୍ପୂର-ଫୁଲ-ସାଜ !



## ମୂକ-ଭଗବାନ

ଜୀବନର ସଙ୍ଗେ ସହି ଦୀନ ଅକିଞ୍ଚନ
ଲଭନ୍ତି ଅହୂତି ତହିଁ ପାଉଛ ଆସନ—
ହେ ଦରିଦ୍ର ସଖା, ନିଖିଳର ସୃଜେଶ୍ୱର !
କରିବାକୁ ଏ ଜୀବନ ସୁନ୍ଦର ଅମର ।
ବରି ନେଇଅଛ ଆପେ ଦୈନ୍ୟ ନିର୍ଯାତନ,
ସହସ୍ର ଲାଞ୍ଛନା ଭୋଗ କ୍ଷତ ଅନଶନ,

କରିଅଛ ଶୁଭ୍ର ଦେହ ଶୋଣିତ ଅପ୍ଳୁତ,
ମାନବ ଗରଳ ବସି କରୁଛ ଅମୃତ !
ଅଶ୍ରୁ ଅନୁରକ୍ତ ତହିଁ ଫୁଟାଉଛ ହାସ,
ନିର୍ଗଣ ଅନ୍ଧାରୁ ତବ ଅଲୋକ ପ୍ରକାଶ !
ପ୍ରଭଞ୍ଜନ ଝଞ୍ଜାମେଳେ ହସ ତୁମେ ଶାନ୍ତ !
ମୃତ ଜୀବନର ଭସ୍ମେ ଅଚଞ୍ଚଳ କାନ୍ତ !
ନିଖିଳ ବିଶ୍ୱର ପାପ ଭରେ ନିସ୍ପେଷିତ,
ମନ୍ଦ ହାସେ ଗାଉଅଛ ଅମର ସଙ୍ଗୀତ ।

—୨—

ଗାଉଛ ଦରିଦ୍ର ସୁରେ ନିଖିଳର ବ୍ୟଥା
ଭ୍ରାନ୍ତ ଏ ମାନବ ଲାଗି ଏତେହିଁ ମମତା !
ନୟନ ଯୁଗଳେ ବହିଯାଏ ବାରିଧାର
ଦକ୍ଷିଣ ବକ୍ଷେ ଯେତେ ଜୀବନର ଭାର ।
ସଭ୍ୟତାର କାଳ ସର୍ପ ବକ୍ଷେ ହୋଇ ଘାର,
ପଡ଼େନାହିଁ ତୁମବ୍ୟଥା ଶ୍ରବଣେ କାହାର ।
ତୁମ ଅଶ୍ରୁ ଯୋଗେ ହୁଏ କୁଳିଶ ତରଳ
ମୂକ ପରବନ୍ତ ଫାଟି ପଡ଼େ ଅଶ୍ରୁ ଜଳ !
ହେ ମୂକ ପାଷାଣ ପ୍ରଭୁ ଚିର ଅଚଞ୍ଚଳ !
ହେ ଲାଞ୍ଛିତ ନିଷ୍ପେଷିତ ହେ ଶିବ ମଙ୍ଗଳ !
ତୁମରି ଶୋଣିତ ଅଶ୍ରୁ ଦାନ କରି ପ୍ରାଣ
ପରଶିଛୁ, କି ଆଦେଶ ଗାଇବାକୁ ଗାନ
ନତଶିରେ ଶ୍ରୀ ପଦ୍ମରେ ମାଗେ ଆଜ ଭିକ୍ଷା
ଦିଅ ସେ ଚୈରିକ ବାସ ଦାରିଦ୍ର୍ୟର ଦୀକ୍ଷା ।



# ସେନା-ସଙ୍ଗୀତ

ନାସ୍ତିକ କରୁଁ ଅଟ୍ଟହାସ୍ୟ
ମୃତ୍ୟୁକୁ କରୁଁ ଫୁତ୍କାର,
ବିଶ୍ୱନାଥର ସୈନିକ ଆମେ,
ଦୁର୍ଜ୍ଜୟ ଆମେ ଦୁର୍ବାର !

ଦୁଃଖ କି ଭାଇ ଆମେ ବୈରାଗୀ,
ସତ୍ୟ ପରାଣେ ରହିଅଛୁ ଜାଗି,
ଶୋଚନା ଦୁଃଖ ହେବ କାହାଲାଗି ?
ମିଥ୍ୟାର ହାତୁ ନିସ୍ତାର !
ମୃତ୍ୟୁକୁ କର ଫୁତ୍କାର ।

ଦୀପ୍ତ ଅମର ନୟନର ତେଜେ
ଶୃଙ୍ଖଳ ପଡ଼େ ଖସି,
ଲୁଚଇ ମୃତ୍ୟୁ ଅନ୍ଧକାର
ଉଠଇ ଉଠିଲେ ହସି,
ଆମ ପଦତଳେ କାନ୍ଦେ ଧରଣୀ
ପାଣ୍ଡୁର ଦଶେ ନଭ,
ନିର୍ଜୀବ ମୋହ ଶାନ୍ତିରେ ଅଣୁ
ଧ୍ୱଂସର ଉପଦ୍ରବ ।

ଉଠେ ଉଠରେ ହସି !
ଶୃଙ୍ଖଳ ପଡ଼ୁ ଖସି !
ଡାକେ ଭୈରବୀ ଶ୍ମଶାନ ଚଣ୍ଡୀ
ମୌନ ଶୋହେ କି ବସି ?

ଅଜି ଅନ୍ତରେ ପ୍ରଳୟ ବିଳାସ !
ଅଜିରେ ଜଡ଼ତା ଦିଏ ବଡ଼ ତ୍ରାସ !
ଅଜି ମରଣର ମହା ଅନନ୍ଦ
ହୃଦୟ ତନ୍ତ୍ରେ ଝଙ୍କାର;
ମୃତ୍ୟୁକୁ କର ଫୁତ୍କାର !

ଅଜି, ମୁକ୍ତିର ଗୀତ ବୋଲ;
ଖୋଲ, ରୁଦ୍ଧ ଦୁଆର ଖୋଲ;
ଅସରେ-ମୃତ୍ୟୁ ପଥ ସୈନିକ
ଅନ୍ତ୍ୟମେ କର କୋଳ ।

ଅମେ, ଅମର ଅଜୟ ବୀର;
ନୁହେଁ, ନତ ଉନ୍ନତ ଶିର;
ରଣ, ଭୂମିରେ ସଦା ଅନନ୍ଦ !
ସଦା, ମିଥ୍ୟା ସହ୍ମତେ ଦ୍ୱନ୍ଦ !
ନିଷ୍ପେଷିତର ଧଟଙ୍କେ ଅମର
ଶୋଣିତ ଅହୂତ ପର !'

ଅମର ରକ୍ତେ ଜୀବନ ବିକାଶ
ଶାନ୍ତ ତପତ ଧାର ।
ଦୁଃଖ କା ଭାଇ ଅମେ ବୈରାଗୀ,
ଘାତକକୁ ଡାକ ଦେଇ ଯାଉ ଦାଗି,
ଛନ୍ଦୁ ଗଳାରେ ମୃତ୍ୟୁର ଫାଶ
ଶାନ୍ତ ହେଉରେ ସଂସାର;
'ନିର୍ଭୟ ଅମେ ଅମେ ଅମୃତ !
ଦୁର୍ଜୟ ଅମେ ଦୁର୍ବାର !



## ସାଥି

ମୋର ଜୀବନର ସାଥି !
ଅନ୍ତରେ ଜାଳି     ପୀରତି ପ୍ରଦୀପ
ଅଣି ଉତ୍ସବ ରାତି !
ତୁମେ, ନନ୍ଦନ ବନ ମଧୁ ,
ତୁମେ, ନୁହସି ତରୁଣୀ ବଧୂ ,
ତୁମେ, ପବନ ଛିର ଶାନ୍ତ,
ମୁଁ ଗୋ, କ୍ଷୁବ୍ଧ ଅକୂଳ ପାନ୍ଥ !
ତୁମେ, ସୁନ୍ଦର ପୂତ କାନ୍ତ !
ତୁମେ, ହୃଦୟର ଜ୍ୟୋତି ଅରୁଣ ସମାନ
ସ୍ନେହେଁ, ମୁର୍‌ଧେ ମୁଁ ଅବଶ୍ରାନ୍ତ !

ତୁମେ, ସନ୍ଧ୍ୟା ଗଗନ ତାରା ;
ତୁମେ, ଉଷାର ପିୟୂଷ ଧାରା,
ତୁମେ, ଉନ୍ମାଦ ମଳୟର,
ତୁମେ, ଶାନ୍ତ ଶାରଦ-ଚର;
ତୁମେ, ମୁକ୍ତ ଆକାଶ ନୀଳ,
ତୁମେ, ତଟିନୀ ଗୋ ଅନାବିଳ,
ମୁଁ ଗୋ, ଅଖିଳ ପାନ୍ଥ   ପୀରତି ଦୁଆରେ
ଭିକ୍ଷୁକ ବସେଁ ଚିର !
ତୁମ, ଆନନ୍ଦେ ଉଠେଁ ମାତି.
ଅଗୋ, ଚିର ଜୀବନର ସାଥି !

ତୁମେ, ଅନନ୍ଦ ସୁର ଧ୍ୱନି,
ଶତ, ଲୀଳାର ଆଧାର ଗୁଣୀ,
ତୁମେ, ତରୁଣ କଳାର ସ୍ୱପ୍ନ,
ତୁମେ, ଅଙ୍ଗ ଅଲୋକ ରତ୍ନ,
ତୁମେ, ଭଙ୍ଗୀ ଗୁଡୁସ ପୂର୍ଣ୍ଣ,
ମୁଗୋ, ବାସନାରେ ସଦା ଘୂର୍ଣ୍ଣ,
ତୁମେ, ସନ୍ଧ୍ୟା ସମାନ   ଶାନ୍ତ ଉଦାର,
ମନ୍ଦର ମୋର ଶୂନ୍ୟ !
ତୁମେ, ତାଲ ଅନ୍ତର ପୁଣ୍ୟ !

ଅଗୋ, ତରୁଣ-କବିର-ଜାୟା,
ତାର, ସୃଷ୍ଟିରେ ତବ ମାୟା,
ତୁମେ, ନାନାରୂପେ ରସେ ଖେଳ,
କେତେ, ବିରହ, ହୃଦୟ ମେଳ,
ମୁଗୋ, ଦେଖିଛି ତ କୋଟି ବେଶେ,
ଦୂର, ପର୍ବତ ମରୁଦେଶେ,
କେବେ, ବୈଶାଖ ନଦୀଧାରେ,
କେବେ, ସନ୍ଧ୍ୟା ଗୋଧୂଳି ପାରେ,
ତୁମେ, କେବେ ନବବଧୂ   କେବେ ପ୍ରଣୟିନୀ
କେବେ ଚଳ ଅଭିସାରେ !

କେବେ, କକ୍ଷେ କଳସୀ ଧରି
ହସି, ଅଳି ତୁଲେ ଯାଅ ସରି,
ମୃଦୁ, ହାସେ କଟାକ୍ଷ ହାଣି;
ନିଅ, ପଲ୍ଲୀବାସିନୀ ପାଣି
ତରୁଣ ହୃଦୟେ   ବାସନା ବିକାର
ଜାଳିଯାଅ ଜାଣି ଜାଣି !

ତୁମେ, ଚପଳା ଆଲୋକ ଜାଳି,
କେଉଁ, ଶୂନ୍ୟେ ମିଶ ଗୋ ଆଳି;
କେଉଁ ଶ୍ରାବଣ ବାଦଲେ ମିଶ,
କବି, ଗାଇ ମରେ ଅହର୍ନିଶ;
ତୁମେ, ନୀଳଧାନ କ୍ଷେତେ ଲହରୀ ବିଳାସ
ତୋଳି ଖୋଜ କେଉଁ ଦିଶ ।

ତୁମେ, ଲକ୍ଷ୍ମୀ ଗୃହିଣୀ ସତୀ,
ତୁମେ, ସନ୍ଧ୍ୟାରେ ଜାଳ ବତି;
ଆଣି, ସୃଷ୍ଟିର ଶିବ ପ୍ରିୟ,
ତୁମ, ଆଲୋକ ସ୍ୱର୍ଗଦିଅ !
ତୁମେ, ତ୍ୟାଗ ଦୀକ୍ଷା ଧରି,
ପ୍ରେମେ, ଦିଅ ଗୋ ଭୁବନ ଭରି;
ସୃଷ୍ଟିରେ ପର କରି ଆପଣାର,
ଚିର ପ୍ରିୟ ସୁନ୍ଦର !

ତୁମେ, ଦୁଃଖରେ ଢାଳ ଲୁହ,
ଢାଳ, ପରାଣ-ପୀରତି-ସୁଖ
ପ୍ରେମେ, ଆପଣା ପରକୁ ଭୁଲି,
ସବୁ, କରି ଏକ ସମତୁଲ,
କବି, ମୁଗ୍ଧ ନୟନେ ଚାହିଁ,
ପ୍ରାଣ, ମୂର୍ତ୍ତ ଗୀତଟି ଗାଏ !
ନାହିଁ, ବାସନାର ପୀଡ଼ା ଆଉ,
ତୁମ, ଶିର ସିନ୍ଦୂର ଚୁହୁଁ !
ଶାନ୍ତ ପରାଣି ପୀରତି ପ୍ରଥମ—
ଅସାର କାହାର ଲଭି,
ଜୀଇ ଉଠେ ପୁଣି କବି !

କ୍ଷଣେ, ସ୍ୱପ୍ନର ଦ୍ୱାରେ ସବୁ,
ଅହା, ଚିର ଜୀବନର ପ୍ରଭୁ,
ମୋର ପ୍ରାଣ ମନ୍ଦିରେ ସ୍ଥିତ;
ଅଜି, କି ଅଲୋକେ ଅଲୋକିତ !
ଜୀବନର ଶେଷେ ଉଜ୍ଜ୍ୱଳ ତାରା
ଶୁଣେଇଁ ତୁମର ଗୀତ !

ତୁମେ, 'ଉର୍ବଶୀ ମଦେ ହସ,
ତୁମେ, ଭାଲ ପୂର୍ଣ୍ଣିର ରସ,
ସେହି, ଅମର ରସେ ମୋ ଭ୍ରାନ୍ତି
କ୍ଷଣେ, କିଭଳି ଶାନ୍ତି ! ଶାନ୍ତି !
ଅମର ସୃଷ୍ଟି ମଧ୍ୟେ ବିରାଜେ
ଚିରନ୍ତ ବିଜୟ ଗୀତ !
ମୋର, ଚିର ଜୀବନର ସାଥି ।

[୧୯୩୦]



## ଶେଷ ପୃଷ୍ଠା

ଜୀବନ ସୀମା ଶେଷେ ଅସୀନ ପାର
ବସିଛୁ ସେ ମୃତ୍ୟୁର ନିତ୍ୟକାଳ,
ଜୀବନ ଚିରନ୍ତନ ନାଟ୍ୟ ସାର
ବୁଣେଇ ପୁଣି ହସି ସ୍ୱପ୍ନ-ଜାଲ ।
ତାହାର ନିର୍ଦ୍ଦେଶେ ମୁଁ ଗାଉଛୁ ଗୀତ
ତାହାର ପଦେ ମୁହିଁ ଢାଳୁଛୁ ଚିତ ।

ତାହାର ନିଦେଶେ ମୋ ଶେଷ ଅଶେଷ

ଜୀବନ ନଦୀ ମୋର ବହଇ,

ତାହାର ନିଦେଶେ ମୁଁ ମିଥ୍ୟା ଭୁଲେ ଲଢ଼ି

ଅଶେଷ ଯନ୍ତ୍ରଣା ସହଇ ।

ତାହାର ପ୍ରୀତି କାଳ-ଯୋଗେ ମୁଁ ଲେଖେଁ ନିତି

ଜୀବନ କାବ୍ୟର ପୃଷ୍ଠା,

ଶତ ହରଷ ବ୍ୟଥା ପୀରତି ମାଦକତା

ବନ୍ଦୀ ମୁଁ ସେ ମୋ ଗୀତ ସ୍ରଷ୍ଟା !

ଜୀବନ ପ୍ରିୟତମ ! ପ୍ରଣୟୀ ନିରମମ !

ଏ ଗୀତ ଶେଷ କେବେ କାହିଁବା ?

ନ ଦେଲୁ ଦରଶନ ପୀରତି ବରତନ ?

ନ ଦେଲୁ ତୋ ଆଲୋକ ନାହିଁ ବା ।

ନୟନ ଜଳ ବଳେ ବୋଲାଏଁ କବ

ସୁଖ ଦୁଃଖର କେତେ ଲେଖେଁ ମୁଁ ଛବି ।

ସକଳ ଦ୍ରଷ୍ଟା ତୁ ସକଳ ସ୍ରଷ୍ଟା ତୁ

ସକଳ କର୍ତ୍ତୁ ତୁହି ବିଧାନ

ତୋହର ଇଙ୍ଗିତ ଲଭି ମୁଁ ପୁଲକିତ

ଏ ଗୀତ କରେଁ ନିତି ଭିଆଣ ।

ସାରିଲେ ଏ ମୋ ଗୀତ ସରଇ ନାହିଁ;

ମୋ ମୁଖେ ତୋର ଗୀତ ତୋହର ପାଇଁ !

ମୋ ମୁଖେ ତୁହି ଶୁଣି ତୋହର ଗାଥା

ଅରୂପ ତୋହ ରୂପ ବନ୍ଦନା,

ମୁଁ ତୋର ଶରଦାସ ମୋ ତୁଲେ ତୋର ସ୍ୱର,

ତୋ ଜୀବ ଲୀଳାର ମୁଁ ମୂର୍ଚ୍ଛନା ।

ଗାଇବ ଗାଇବ ମୁଁ ପ୍ରଣୟ ଦାସ ତୋର
କଙ୍କର ମୁଁ ତୋର ଚରଣେ;
ଚାହିଁବ ତୋର ମୁଖ ଧାଇ ଭୁଲିବ ଦୁଃଖ
ଜୀବନେ ପୁଣି ମୋର ମରଣେ ।
[ ୧୯୩୮ ]



## ଚିର ନବୀନ

ଛାଡଗଲେଣି ମୋର ସକଳ ପ୍ରିୟ
ଚରଣେ ପୂର କର ଶୂନ୍ୟ ।
ନବୀନ ପୁରାତନ ଅଛିତ ନାମଗନ
କାହିଁକି ହେବ ଅବା ଖିନ୍ନ ?
ଯା ଲାଗି ଗାଉଥିଲି ସନ୍ଧ୍ୟାକାଶେ ଚାହିଁ
ମୁଗ୍ଧ ନୟନରେ, ସେ ଆଜି ପାଶେ ନାହିଁ,
ନ ଆସେ ଥରେ ଭୁଲି ନ ଚାହେଁ ଥରେ ଫେରି
ଏ ପଥେ ଗଲେ କେବେ ଉଦାସେ;
ବାଜିଲେ ଚାହିଁ ଚାହିଁ ମୋ ଗୀତ ଯାଏ ପାହି
ମୋ ଗୀତ ମନେ ମରେ ହତାଶେ ।
ଜାଣିଛୁ ନାନାଭାବେ ଜାଗ୍ରେଛି ମୋ ପ୍ରାଣ
ଢାଇଁଛ ଜୀବନର ସବିତା;
ଗାଇଛୁ ସୁଖେ ଦୁଃଖେ ପରଶ ଲଭି ବୁକେ
ବିରହ ମିଳନର କବିତା ।
ଜୀବନେ କେତେ ରୂପେ ଦେଇଛ ପରିଚୟ,
ଛନ୍ଦେ ଅନୁରାଗେ କରିଛ ମୋତେ ଜୟ,

ନେଇଛ ଅବହେଳେ ଦେଇଛ ଅକାତରେ
ରଚିଛ ସ୍ମୃତି ପୁଟରେ ସମାଧି,
ଉଷର ଭୂମେ ପୁଣି ଫୁଟାଇଛ କମଳ
ଜୀବନ ସୂର୍ଯ୍ୟ ହେ ଅନାଦି !

ବାଦଲ ଭେଦ ତୁମେ ଆଲୋକ ପରକାଶ !
ନୀରସ ଅଧରେ ମୋ ଫୁଟି ଉଠିଛ ହାସ,
ଏସନ ପ୍ରିୟ ଥାଉଁ କି ଦକା ମୋର ଆଉ ?
ଗାଉଛି ଗାଇବି ମୁଁ ତା ଲାଗି,
ସକଳ ବନ୍ଧନେ ମୋହ ଭରମ ପ୍ରେମେ
ସକଳ ସ୍ଥାନେ ରହେ ସେ ଜାଗି ।
ତାହାର ଇଚ୍ଛାରେ ଗଗନେ ଗ୍ରହ ତାରା
ସଜୀବ ଅଜୀବ ଯେ ଭରମେ,
ଆଲୋକେ ଫୁଲ ଫୁଟେ ମୋହ ତମିର ତୁଟେ,
ପ୍ରଣୟ ପଥେ ଗୃହେ ସରମେ ।

ତା ଦେହେ ମିଶିଯାଏ ସକଳ ପୁରାତନ,
ନବୀନ ଭାବେ ପୁଣି ଦିଏ ସେ ଦରଶନ,
ସକଳ ସୀମା ପାରେ ଯୋଜନା କରେ ପଦ
ସବୁର ନିୟାମକ କବି ସେ,
ମୋ କ୍ଷୀଣ ଭାଷାରେ ତା କାବ୍ୟ ପରକାଶ
ଜ୍ଞାନ ଭାବର ଅନୁଭବୀ ସେ ।
ପୁରାଣ ପ୍ରଣୟ ସେ ନ ଗୃହେଁ ଥରେ
ନ ସ୍ପୃହଁ, ନାହିଁ ମୋର ଶୋଚନା,
ନବୀନ ଅତିଥି ମୋ ମନ୍ଦହାସେ କହେ
"କାନନ ଫୁଲେ ହାର ରଚ ନା !"

ମୋ ଜୀବନ ଯମୁନା ପୁଳିନେ ରହି ରହି,
ବଜାଏ ବଇଁଶୀ ସେ ପରାଣ ଦଏ ଦହି,
ଜୋଛନା-ପାରାବାରେ      କୂଳିଶ ପ୍ରାଣଗଳେ
ଜୀବନ କୁଞ୍ଜେ ମୋ ରାସ ସେ;
ତା ଲାଗି ସିନା ନିତ      ଏ ବାତାୟନ ପାଶେ
ଜାଗର ଢାଳେ ବସି ହତାଶେ ।

ତା ପଦେ ଅରପେ ମୋ ବିଫଳ ଗୀତ,
ନ ବାଜୁ ଆନ ହାତେ ନାହିଁ ମୋ ଭୀତି !
ଯେ ମାଳା ରଚନ୍ତି ମୁଁ      ଅଳସେ ବସି ବସି
ଶୁଖୁ ସେ କାନନେ ମୋ ଶୋଚନା ନାହିଁ
ମୋ ହୃଦ ପ୍ରେମ ନଈ      ମରୁରେ ହେଉ ଦହି
ସକଳ ଲୀଳା ଏ ମୋ ତାହାର ପାଇଁ ।



## ବୁଦ୍ଧ ବନ୍ଦନା

ପାପ ତାପ କଳୁଷ ପ୍ରାଣେ ବରିବାକୁ ତବ ଦୀକ୍ଷା,
ଶ୍ରାନ୍ତ କ୍ଷୁବ୍ଧ ଭିକ୍ଷୁ ଆସିଛି ଦିଅ ହେ ମୁକ୍ତିଭିକ୍ଷା !
ମୁକ୍ତ କର ହେ ମୁକ୍ତ ମୋ ମନ ମନ୍ଦିର ଅବରୁଦ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! । ୧ ।
ସ୍ପର୍ଶ ସେ ତବ ଶତ ଅମୃତ ନିର୍ଜୀବ ପ୍ରାଣେ ବର୍ଷ,
ତମିସ୍ରାବୃତ ଶତ ମନ୍ଦିରେ ଢାଳ ହେ ଆଲୋକ ହର୍ଷ;
ଜୀବନ ଅରବିନ୍ଦ ହେ ମମ ମୁଦ୍ରିତ ପାପ କ୍ଷୁବ୍ଧ,
ବୁଦ୍ଧ ହେ ବୁଦ୍ଧ ହେ କର ହେ ମୁକ୍ତ ଶୁଦ୍ଧ ! ୨ ।

ଅନ୍ତରେ ମୋର ଅଶ୍ରୁ ବହୁଛି ସକଳ ଜୀବନ ବ୍ୟାପି,
କ୍ଷମବ ପଯୃର ବନ୍ଦନା ଲାଗି ବୁଦ୍ଧ ହେ ଶର ପାପୀ;
ତବ ସୁନ୍ଦର ଚରଣ କମଳେ ମୋ ଚିତ୍ତ-ଭୃଙ୍ଗ ଲୁବ୍ଧ,
ବିଶ୍ୱାସ ଦିଅ ଦିଅ ହେ ଭରସା ଚିର ଅମୃତ ଶୁଦ୍ଧ ! । ୩ ।
ଜୀବନର ଶତ ସଂଗ୍ରାମେ ପ୍ରଭୁ ଦେଇଛି ଛନ୍ଦ ଭଙ୍ଗ,
ଦେଖିଛି ଭ୍ରାନ୍ତ ନର୍କର ଜ୍ୱାଳା ବାସନା-ମୋହ-ରଙ୍ଗ,
ଧର୍ମ ଶରଣ ସଂଘ ଶରଣ ଶରଣ ହେ ମୋର ବୁଦ୍ଧ !
ଅଭୟ ହୃଦେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୪ ।
ନିର୍ଯାତିତ ମୋ ନୟନ ସଲିଳେ ଅଦେଶ ଧୋଇବି ପାଦ,
ଭୁଲିବି ଚରଣ-ଆଶ୍ରୟ ଲଭି ଅଜ୍ଞାନ ପରମାଦ;
ଭୁଲିବି ଦୈନ୍ୟ ଆଧି ବ୍ୟାଧି ଅନ୍ତର ସମୃଦ୍ଧ,
ଚରଣ ପଦ୍ମେ ସ୍ଥାନ ଦିଅ ହେ ଅବିନଶ୍ୱର ଶୁଦ୍ଧ ! । ୫ ।
କରୁଣା ସ୍ୱର୍ଗ ଗଙ୍ଗା ପ୍ଳାବନେ ମୁକ୍ତ କଲ ହେ ପାପ,
ଖଣ୍ଡିଲ ମୋହ କଲୁଷ ଦୁଃଖ ବିଶ୍ୱର ଅଭିଶାପ;
ଆଶ୍ରୟ ଦେଲ ଅମୃତ ଦେଲ ହେ ଶିବ ସତ୍ୟ ମୁଗ୍ଧ !
ଆସିଛି ଚରଣ ଲୁବ୍ଧ ଭିକ୍ଷୁ ଆଶ୍ରୟ ଦିଅ ଶୁଦ୍ଧ ! । ୬ ।
ଲୁପ୍ତ ହେଉ ହେ ଏଦେହ ଆମା ଉଜ୍ଜ୍ୱଳ କର ସ୍ପର୍ଶେ,
ସୁନ୍ଦର ପୂତ ଶୁଦ୍ଧ କର ହେ ଧରମ-ପୁଣ୍ୟ-ଦର୍ଶେ;
ଦିଅ ହେ ଭିକ୍ଷୁ ଗୈରିକ ବାସ ସଂଘ ପୁଣ୍ୟାନୁବ୍ଧ,
ବୁଦ୍ଧ ହେ ବୁଦ୍ଧ ହେ ଅବିନଶ୍ୱର ଶୁଦ୍ଧ ! । ୭ ।



## ଯାତ୍ରା ସଙ୍ଗୀତ

ଜୀବନପାନ୍ଥ ମୋ ଭରିଛ କେତେ ମତେ
ନ ଦେଲ କିଛୁ ବୋଲି କହିବି କି ଦେହ ଅନ୍ତ ?
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।
କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଚୁଅ ଜାଣି ଜାଣି,
ବୃଥା ମୁଁ ଅଭିମାନୀ ହୃଦେ ଧରିଲି ଛାଣି
ମରତ ପ୍ରବାସୀ ମୁଁ ନ ଜାଣି ଆଣେ ଦାଉ ।୧।
ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅବିରତ,
ଅଳପ ତୃଷା କ୍ଷୁଧା ଲଭି ତୁମରି ସୁଧା
ତୃପତ ହେଲି, ତେବେ ଲୋଡ଼ଇଁ ଏ ମରତ ।
ନିଜ ବାସନା ଜାଲେ ବିକଳ ବନ୍ଧିତ,
ତମିର ଅଙ୍କେନେ ମିଳେ କି ଅମୃତ ?
ଛାଡ଼ିବି ଦୂରେ ଯିବି ପାରିବାରେ ଭାସିବି
ଲଙ୍ଘି ହିମଗିରି ଯିବି ଗୋ ବେଳ ଥାଉଁ । ୨ ।
ଦେଇଛ ପ୍ରିୟା ପ୍ରାଣେ ଅମର ପ୍ରୀତି ଭର
ମୋ ଶିଶୁ ବଦନେ ଅମର ମୋର ଆଶା,
ପ୍ରଭାତ ସନ୍ଧ୍ୟାରେ ଖେଳାଇ ରୂପ ତେଜ
ବିକଳ କଣ୍ଠେ ମୋ ଫୁଟାଇଛ ତ ଭାଷା;
ଗାଇବି ବନ୍ଦୀ ମୁଁ ଚରଣ ବନ୍ଦନା,
ସେଥିଲାଗି ଏ ବୀଣାରେ ଦେଇଛ ମୂର୍ଚ୍ଛନା,

ସେ ସୁଖ କରି ହେଲା ଲଗାଇଲି ମୁଁ ଖେଳା
ମିଳନ ମଧୁବ୍ରତ ପାଇଲି ତୁହି ତୁହି ।
ମିଥ୍ୟା ବିପଣୀରେ ବଣିଜ ମରଣ ସେ
ନ ଚେତ ଝଟିଲ ଯାହା କଲି ମୋ ମଣି ଭୁଇଁ ! ୩ ।
ପତଙ୍ଗ ଉରୁ ମୁଁ ଗୋ ପଳାଉ ମୋ ପଥର
ଜୀବଣ ମରଣରେ ହରଲୁ ଅକାଳରେ,
ନାହିଁତ ତେବେ ଉଲେ ଶୋଚନା ଖେଦ ମୋର
ହୃଦୟମଣି ମୋର ସାଗର ଅତଳରେ;
ପଶୁଣୀ କୁଞ୍ଜେ ଗୋ ତାର ମୁରଲୀ ଧ୍ୱନି !
ପବଣ-ସ୍ୱନେ ଗୋ ତା ଶୁଭ ଆଗମନୀ,
ଜୀବନେ ଦେବା ନେବା ଭିଆଣ ସବୁ ତାର
ସେ ମହାଦାନୀ ହସ୍ତେ ପରଶେ ଦେଖି ନାହିଁ ?
ତା ପାଦସେ ପତଙ୍ଗ ଜୀର୍ଣ୍ଣ ଜୀବତରୁ
ପଲ୍ଲବିତ ଅହା ଶୋଚନା କିବା ଆଉ ? ୪ ।
ଭୁଲରେ ଭୁଲି ମନ ନିତ୍ୟ ମଧୁବନ
ଦେଖିବୁ ପ୍ରିୟରାସ, ଅଦୂରେ ଗୋଲକରେ;
ଅଦୂର ପଥେ ଆଜ ମିଳନ ତାର ସାଥେ
ବିଜୟ ରଥେ ତୋର ଜୀବନ ଅଲୋକରେ !
ଯାତ୍ରୀପଥ ତୋର ପଲକେ ହେବ ଶେଷ,
ଶେଷରେ ସନ୍ଦେହ ସକଳ ତୋର କ୍ଳେଶ,
ଧନ୍ୟ ହେବୁ ଆଜ ପୁଣ୍ୟ ଦରଶନେ,
ମୁକ୍ତ ସବୁ ପାପ ଦୁଷ୍ଟ ତର ସ୍ୱହୁ !
ଜୀବନ ଦେବତା ମୋ ଜୀବନ ପଥେ ବାଙ୍କେ,
ତରଣୀ ମୋର ତାର ସାଟରେ ବହିଯାଉ !। ୫ ।

[ ୧୯୩୧ ]



# ବର୍ଷା ବରଣ

ସ୍ୱଚ୍ଛ ଗୁରଜନ କରି ଅସ !
ଘନ ଅସ !
ନିଅ ନିଅ ବିଶ୍ୱର ତ୍ରାସ,
ଘନ ଅସ !

ଜଳରୁ ଜଳସି ଉଡ଼ାଇ,
ବିଦ୍ୟୁତ କୌତୁକ ଲଗାଇ,
ସୃଷ୍ଟି ପୁଲକ ସୁଖ ଜଗାଇ,
ନିର୍ଜୀବ ମୃତ ଦୁଃଖ ନାଶ।
ଘନ ଅସ । ୧ ।

ତପ୍ତ ବିକଳ ଏଇ ଧରଣୀ,
ଶୂନ୍ୟ ବିଜନ ଦୂର ଶରଣି,
ଶ୍ରୀହୀନ ବିବସ କେ ରମଣୀ,
ଆଗମନ ପଥେ ମେଲି ବାସ;
ଡାକେ ଅସ !
ଘନ ଅସ ! ୨।

ଅସ ଅସ ନକର ନିରାଶ
ଚୌଦିଗ ଅବର ଅକାଶ,
ଅମୃତ ଜୀବନ ପ୍ରକାଶ,
ଅମୃତ ଜୀବନର ଉତ୍ସ !
ଘନ ଅସ !। ୩।

ଅତୁଳ ତଟିନୀ ଡାକେ ଶୁଷ୍କ,
ଡାକେ ଗିରି କାନ୍ତାର ରୁକ୍ଷ,
ହର ଘନ ଧରଣୀର ଦୁଃଖ,
ଡାକେ ତରୁ ପଲ୍ଲବ ଘାସ,
ଘନ ଅସ ! । ୪।

ଡାକେ ଅଙ୍ଗ ନିର୍ଜୀବ କବି ହେ,
ନିର୍ଜୀବ ଦୁଃଖ ଅନୁଭବୀ ହେ,
ଚିର ନଷ୍ଟ ନୃତ୍ୟର ଛବି ହେ,
କାହିଁ ନବ ନିତ୍ୟ ସେ ରାସ,
ଘନ ଅସ ! ୫ ।

ଘନ ଉଷ୍ଣ ଶୀତ ପବନେ,
ଅସ ମେଲି କ୍ଷିପ୍ର ସେ ଚରଣେ,
କାନ୍ତ ସ୍ନିଗ୍ଧ ଶ୍ୟାମ ବରଣେ;
ଦୁଃଖର ନାହିଁ ଅବକାଶ,
ଘନ ଅସ ! ୬ ।

[୧୯୩୧]



# ନିଶୀଥ-ଯାତ୍ରୀ—

ସେ ଯେ, ଡାକଗଲା କବା ଗୀତେ !
ଅହା ନିଶବଦ ସେ ନିଶୀଥେ !
ଅନ୍ଧାର ରାତି ଅସୁଥିଲା ପାହି,
ଚମକି ଉଠିଲି ସେ ପରଶ ପାଇ,

କବା, ବ୍ୟଥା ଉଷିଗଲ ରାତେ !
ଅହା ନିଶବଦ ସେ ନିଶୀଥେ ।

ସେ ଯେ କାହା ସନ୍ଧାନେ କି ବେଦନା ଭରି
ଚଲିଥିଲ ଗାଇ ଗାଇ
ଶୁଣିଛ କି ତାର ସଙ୍ଗୀତ ?
ଗମ୍ଭୀର ତାର ମୁକ୍ତିର ଗୀତ
କଅଁ କଲ ମୋତେ ବାଉ
ମୁଁ ତା, ହୃଦୟ ରକ୍ତେ ରଞ୍ଜିତ ।

ମଣିଛି ଲୁଚି ତାର କନ୍ଦନ
ଶୂନ୍ୟ ନିଶୀଥ-ହୃଦ-ନନ୍ଦନ.
ଶୂନ୍ୟ ମୋ ମନ ଚାହେଁ ପଥ ସଚକିତେ ।
ଅହା ନିଶବଦ ସେ ନିଶୀଥେ !

ଶୁଣିଛି ମୁଁ ତାର ମୁକ୍ତକଣ୍ଠେ
ସଫଳତାର ଆନନ୍ଦ
ସେ ଯେ ଉପେକ୍ଷି ଚାଲିଛି ମୁକ୍ତ ପଥିକ
ଜୀବନର ବାଧା ବନ୍ଧ !

ପୁଚ୍ଛିଲି ମୁଁ ତାକୁ "ତୁମ ତୁଲେ ନେବ ନାହିଁ ?"
ସେ ଯେ, ଉଦାସ ହତାଶେ କଲ କେତେ "ନାହିଁ ନାହିଁ ।"
ମୁଁ ଗୋ ତାହାଲାଗି କପାଁ ବାଉ ?
ମୁଁ ଗୋ ଅଶ୍ରୁ ଦେଉଛି ବାହି !

ସକଳ ଅପଣା ଭଲ ସେ ତ ପର,
ଶୂନ୍ୟ କଲ ଏ ସ୍ୱପ୍ନର ଘର,
ଶୂନ୍ୟ ରଜନୀ କେସନେ ବା କହ କାଟେ ?
ସେ ଯେ ଡାକିଗଲ କବା ଗୀତେ ।



## ସନ୍ଧ୍ୟା-ଆରତି

ବନ୍ଧୁ ନାଅ ଆଜ ତରି;
ଅଶ୍ରୁ ଉଠିଛି ଭରି;
ସନ୍ଧ୍ୟାର ଦେଶେ ଯିବାକୁ ମୋ ମନ
(ଚିର) ଦୀନ ସନ୍ୟାସୀ ପରି ।

ରଜନୀ ଲଜ୍ଜା ଉଢ଼ଣୀ ଟାଣି,
ପ୍ରିୟାର ସ୍ମୃତିଖାଣି ଖିରେ ଯାଏ ହାଣି,
ଲଗାଇଛି କିଏ ସ୍ୱପ୍ନର ମାୟା,
ଧୈର୍ଯ୍ୟ ନ ପାରେ ଧରି !
ସନ୍ଧ୍ୟାର ଦେଶେ ବନ୍ଧୁନାଅ ମୋର ତରି !

ମୁଖର ବିଶ୍ୱ ହେ ମୁଖର କବି
ନତ କର ତୋର ମଥା,
ମୌନେ ନୀରବେ ଶୁଣି କିବା କହେ
ବ୍ୟଥିତ ଏ ନୀରବତା !

ଜୀର୍ଣ୍ଣ ମଳିନ ଆଜ ମୋର ବାସ,
ସବୁ କଳଙ୍କ କୁଟିଳତା ହାସ
ଖସିପଡ଼ୁ ମୃଗୋ ମୁକ୍ତ ହୃଦୟେ
ସନ୍ଧ୍ୟାଟି ନେବ ବରି !
ସ୍ତମ୍ଭିତ ନୀଳ ଶାନ୍ତ ତଟିନୀ ପରି ।



## *ଅମ୍ବପାଳୀର ଉତ୍କଣ୍ଠା

ଅଜ ମୋର ପୁରେ ଆସିବେ ସଜନୀ;
ଜଗତ ଅଲୋକ ଗୋ !
ବାମ ବାହୁ ଆଖି ଥରେ ଘନ ଘନ
ଅଙ୍ଗ ପୁଲକ ଗୋ !
କି ଦେଇ ପାରିବି  ଦେବତା ପୟରେ
କହିବୁ କି ସହି ରେ ?
ଆସିବେ ବୁଦ୍ଧ  ଫୁଟାଇ ପଦ୍ମ
ରୁକ୍ଷ ଏ ମହୀରେ । ୧ ।

ହସି ହସି ଅସେ ଅରୁଣ ଏ ଉଷା
ହସିବ ମୋ ପୁରି ଗୋ,
ସକଳ ଜୀବନ ଧନ୍ୟ ସକଳ
ପୁଣ୍ୟ ମୋ ପୁର ଗୋ ।
ଉଇଁବେ ଲକ୍ଷ ସୂର୍ଯ୍ୟ ଚନ୍ଦ୍ର
ଉଜ୍ଜ୍ୱଳ ମହୀରେ,
ଅସିବେ ବୁଦ୍ଧ  ଫୁଟିବ ପଦ୍ମ
ମୋ କୁଟୀରେ ସହିରେ ! ୨ ।

କି ଦେବି ସଜନି  କହନା ତୁ ବାରେ ?
ନଶ୍ୱର ଦେହ ଗୋ !
ନଶ୍ୱର ମୋର  ରକ୍ତ ଅଧର;
ଷୁଣ୍ଣ ସେନେହ ଗୋ;

* ବୈଶାଳୀର ରାଜନଟୀ । ବୌଦ୍ଧ ଯୁଗର ସନ୍ୟାସିନୀ ।

ସୃଷ୍ଟି ଏ ମୋର ଚଲି ଭୂଲୁ ଢଳେ
ମୃତ୍ୟୁ ହସଇ ରେ,
ଅସିବେ ବୁଦ୍ଧ ଅସିବେ ଭିକ୍ଷୁ
କି ଦେବି ମୁଁ ସହରେ ? ୩ ।

ଯୌବନ ମୋର ଚଉ ବକାରେ
ସଜନ ହୋଇଛି ଭ୍ରଷ୍ଟ,
ଦେବତା ଅସନ ଶୂନ୍ୟ ହୃଦୟେ
ମୋ ପୂଜା କୁସୁମ ନଷ୍ଟ !
ପୋଛିବ ପଯ୍ଯର ମୋ ଚକ୍ଷୁର ଦାମେ ?
ଜଗତ୍‌ବହସଇ ରେ !
ଅସିବେ ବୁଦ୍ଧ ଅସିବେ ଭିକ୍ଷୁ
କି ଦେବି ମୁଁ ସହୃରେ । ୪ ।

ଭିକ୍ଷୁକ ସେ ତ ଚିର ଭିକ୍ଷୁକ
କି ଦେବି ଭିକ୍ଷା ଗୋ ?
ନିଃସ୍ୱ ଜୀବନେ ସେ ମୋ ପ୍ରିୟ ଲଗି
ଚିର ପ୍ରତୀକ୍ଷା ଗୋ !
ମନେ ଭାବିଲେଁ ମୋର ସବୁ ସମ୍ପଦ
ପଦେ ଅରପିଇଁ ରେ
ଅସିବେ ବୁଦ୍ଧ ଜଗତ ବନ୍ଦ୍ୟ
କି ଦେବି ମୁଁ ସହୃ ରେ । ୫ ।

ଶୁଣି ନା ସଜନି ଡାକଇ କୋକିଳ
ମଳୟ କୁଞ୍ଜରେ,
କେଉଁ ପ୍ରିୟଜନ ବାର୍ତ୍ତା ବହୁ ଗୋ
ଭ୍ରମର ଗୁଞ୍ଜରେ !

ଜଗତ ବନ୍ଧ୍ୟ    ଅଗମନୀ ଗାଇ
   ମଳୟ ବହଇ ରେ,
ଅସିବେ ବୁଦ୍ଧ   ଜୀବନ ଅଲୋକ !
   କି ଦେବ ମୁଁ ସହ ରେ । ୭ ।

ସେ ଚିର ମୁକ୍ତ    ଚିର ପ୍ରଶାନ୍ତ
   ଦେବେ କି ଭିକ୍ଷୁ ଦୀକ୍ଷା ?
ଭିକ୍ଷୁର ଥାଳ    ଶିରେ ବହି ନିତ
   ବିଶ୍ୱେ ମାଗିବି ଭିକ୍ଷା ।
ଶୂନ୍ୟ ଜୀବନ    ଅରପିବି ପଦେ
   ନେବେ କି ନା ସହିରେ ?
ଅସିବେ ଜୀବନ    ଚିର ପ୍ରିୟ ମମ
   ରୁଷ ଏ ମହୀରେ । ୭ ।



## ଭାରତ ଭିକ୍ଷୁ

୧

ଦେଖିଛୁ ଦେବତା ତାର ଦୀନ ଭିକ୍ଷୁ ରୂପ
ପୃଷ୍ଠେ ବହି ସୃଷ୍ଟି ବ୍ୟଥା ଅତ୍ୟାଚାର ସ୍ତୂପ
ଦ୍ୱାରେ ଦ୍ୱାରେ ବୁଲି-କରେ ଅଶ୍ରୁ ଦୁଃଖ ଭିକ୍ଷା
ତୁମେ ତ ଦେଇଛ ତାଙ୍କୁ ଚିର ଭିକ୍ଷୁ ଦୀକ୍ଷା ।
ଭିକ୍ଷୁ ଚିର ଭିକ୍ଷୁ ସେ ଯେ ନିର୍ଯାତନା ତାର,
କାହିଁ କଷାଘାତ'ପଦାଘାତ ପୁରସ୍କାର;
ଙ୍କେବେ ଅପମାନ ଘୃଣା ପଶୁ ବ୍ୟବହାର,
ସବୁ ଭୁଲି ଭିକ୍ଷୁକର ଭିକ୍ଷା ଖାଲି ସାର !

ଦେଖିଛୁ ସେ ଶୀର୍ଣ୍ଣ ଅଙ୍ଗୁ ଝରଇ ଶୋଣିତ,
ମାତର ଦୁର୍ଦମ ନରବପୁ ତାର ଶତ୍ତ !
ସକଳ ମାନବ ପଥ ଏଡ଼ି ଅଲକ୍ଷିତେ
ଚାଲିଛୁ ଉଦାର ଶାନ୍ତ ତବ ଜୟଗୀତେ ।
ଭାଳେଁ ମନେ ତା ପଦେ ମୋ ଅଶ୍ରୁ ଦିଏ ଢାଳି
ଏ ସଂସାର ପଥେ ତବ ଭକ୍ତ ଯାଏ ଚାଲି ।

— ୨ —

ପ୍ରଶାନ୍ତ ମୂରତି ଧୀର ତାର ପଦକ୍ଷେପ,
ନାହିଁ ତଳେ ମନେ ଶଙ୍କା ସ୍ୱଦେହ ଅକ୍ଷେପ;
ଭୁବନ ଅନ୍ଧାରେ ବୁଲେ ଭିକ୍ଷା ତାର ଦୁଃଖ.
ଦେଖିଛୁ ପ୍ରଶାନ୍ତ ତାର ସମୁଜ୍ଜ୍ୱଳ ମୁଖ !
ଦେଖିଚାଲି ଦୁଃଖୀର ଦୁଃଖ ଯାଏ ଅପସରି
ଆଶାର ଆଲୋକ ଖେଳେ; ଶଙ୍କିତ ଶର୍ବରୀ !
ଦେଖିଛୁ ସେ ତବାଲୋକେ ଅନ୍ଧକାର ପାରେ,
ଜୀବନ ପ୍ରତିଷ୍ଠା ତାର ମୃତ୍ୟୁ ହାହାକାରେ !
ମରୁଭୂମେ ଫୁଟାଏ ସେ ଜୀବନର ଫୁଲ,
ନିର୍ଯାତିତ ଦୁଃଖ ବହି ନେବାକୁ ଆକୁଳ;
ଶୋଭଇ ତା ଅଙ୍ଗେ ଥାଇ ବସ୍ତ୍ର ଗୈରିକ
ଗୈରିକ ପତାକା ! ତବ ଦୁର୍ଦମ ସୈନିକ—
ମନ୍ଦେ ହସି କରେ ମୌନ ଆଲୋକ ପ୍ରତୀକ୍ଷା,
ଦେଖିଛୁ ଦେବତା ତବ ଭକ୍ତ କରେ ଭିକ୍ଷା ।

—ଗ—

ସନ୍ଧ୍ୟା ଅନ୍ଧକାରେ ତବ ଜୟ ଗୀତ ଗାଇ,
ବିଜୟ ବାହିନୀ ନିଏ ଅଲକ୍ଷେ ଚଳାଇ,
ଯାଏ ଏହି ପଥେ ମୌନ ସକଳ ପଶ୍ଚାତେ
ନିଃସଙ୍ଗ ବିହଙ୍ଗ ଅପେ ଘନାବୃତ ରାତେ,
ଚାଲିଯାଏ ଧୀର ପଦେ ଓଷ୍ଠେ ସ୍ମିତ ହାସ,
ବିଶ୍ୱ ବ୍ରହ୍ମାଣ୍ଡର ଯେତେ ବେଦନା ପ୍ରକାଶ !
ସେ ହାସେ ପ୍ରସ୍ତର ଶିଳା କରେ ନିବେଦନ
କାଳର ନିଷ୍ଠୁର ଲୀଳା ! ହୁଅଇ ଯେସନ—
ରଣ ଶେଷେ ରଣଭୂମି ! ତୀବ୍ର ଅନ୍ଧକାରେ—
ପଦ୍ମଫୁଲ ଝୀଣି ହସେ ! ବିଜନ କାସାରେ ।
ସେହି ହାସ ତାଙ୍କର ଦେଖି ଝରଇ ମୋ ଲୁହ;
ସେହି ହାସ ତଳେ କେତେ ଶୋଣିତର ସୁଅ !
ଗାଇ ତା ବିଜୟ ଗୀତ କବି ଆତ୍ମହରା,
ଧରିର ଶୃଙ୍ଖଳ ହାସେ ଖସିପଡ଼େ ପରା !

—ଘ—

ଧରଣୀ ରାକ୍ଷସ ତୃଷା ନିବାରଣ ଲାଗି
ସମବେତ ଭିକ୍ଷୁ ସଂଘ ଦୀନ ସର୍ବତ୍ୟାଗୀ !
ସେ ଭିକ୍ଷୁ ଶୋଣିତେ କର ଧୌତ କରି ଶାନ୍ତ
ଧରଣୀର ପାପ, ତହିଁ ସେ ଯେ ଜଣେ ପାନ୍ଥ ।
ଗୃହତ୍ୟାଗୀ ଦେଶତ୍ୟାଗୀ ଚାଲେ ସଂଘ ସାଥେ,
ଗୈରିକ ପତାକା ତବ ମୌନେ ବହି ହାତେ,

ବୁଲଛୁ ନିର୍ଭୀକ ଧୀରେ ନିର୍ଯାତିତ ଦ୍ୱାରେ
ଅବା ଯହିଁ ନିପୀଡ଼ିତ ମରେ ହାହାକାରେ
ଧରଣୀ ନ ଦଏ ଯାକୁ ତଳେ ହେଲେ ରହା
ଦିନେ ହେଲେ ଦୁଃଖେ ଯାଇ ନ କହେ କେ ଅହା,
ସଭ୍ୟତା କଟାକ୍ଷେ ଯାକୁ କରେ ଉପହାସ,
ଚିର ଅନାହାର କ୍ଲିଷ୍ଟ, ନ ଫୁଟେ ଯା ହାସ,
ଲକ୍ଷ କୋଟି ଅଭିଶପ୍ତ ଦଗ୍ଧ-ପ୍ରାଣ-ଲାଗି
ଦ୍ୱାରେ ଦ୍ୱାରେ ତବ ଭିକ୍ଷୁ ଭିକ୍ଷା ଯାଏ ମାଗି ।



## ବୁଦ୍ଧ

ବୁଦ୍ଧ ! ଦେଖିଛୁ ତବ ଭିକ୍ଷୁର ରୂପ,
ସ୍କନ୍ଧେ ତାହାର ବିଶ୍ୱ ବେଦନା ସ୍ତୂପ !
ତା ବେଦନା ନୟନ ନୀର ଝର ଝର,
କମ୍ପିତ ମ୍ଳାନ ବ୍ୟଥିତ ଅଧର,
ବଜ୍ର ସମାନ ଶୁଣିଛୁ ସେ ତବ ବାଣୀ
ପ୍ରଳୟର ପଥେ ନେଇଛ ହେ ତାକୁ ଟାଣି ।୧।

ନେଇଛ ହେ ତାକୁ ମୃତ୍ୟୁ କରାଳ ଦେଶେ,
ମିଥ୍ୟା ରାଜଇ ଯହିଁ ବିଜୟୀର ବେଶେ !
ଯେ ଦେଶେ ଶୁଷ୍କ ପରାଣ କମଳ,
ମତ୍ତ ମାନବ ଭକ୍ଷେ ଗରଳ,
ସେ ଦେଶେ ଗାଇବ ଦେବତା ସେ ତବ ବାଣୀ
ଭିକ୍ଷୁର ବେଶେ ନେଇଛ ତ ତାକୁ ଟାଣି ।୨।

ବହାଇ ଯେ ଦେଶେ ଶୋଣିତ ସରିତ ଧାରା,
ଶଙ୍କିତ ଧରା ବହ୍ନ ନରପାପ ଭାରା;
ସାମ୍ୟ ମୈତ୍ରୀ ଯହିଁ ପରିହତ,
ବିଜୟ ବାହ୍ନନୀ ତବ ଅବନତ,
ସେ ଦେଶେ ଦେବତା ଗାଇବାକୁ ତବ ବାଣୀ
ମୃତ୍ୟୁର ପଥେ ନେଇଛ ତ ତାକୁ ଟାଣି ।୩।

ନେଇଛୁ ସେ ବର ଅନଳେ ଜ୍ୱଳିବା ଦୀକ୍ଷା
ବିଶ୍ୱ ଦୁଆରେ କରେ ସେ ପିରତି ଭିକ୍ଷା ।
ତା ବାଣୀ ପରଶେ ସ୍ତବଧ ପରାଣ,
ତାଳଇ ଅଶ୍ରୁ ମୌନ ପାଷାଣ,
ବର ନେଇଛୁ ସେ ପରମାଦ ଜାଣି ଜାଣି
ଶୁଣି ହେ ରୁଦ୍ର ତୁମର ବଜ୍ର ବାଣୀ ।୪।

ତୁମର ମନ୍ତ୍ର ଶୁଣି ସେ ସକଳ ତ୍ୟାଗୀ,
ଦୀନ ଦରିଦ୍ର ବ୍ୟଥାର ସେ ଅନୁରାଗୀ;
ଆପଣା ଅଶ୍ରୁ ରକ୍ତ ତିଆରି,
ତୁମ ମଙ୍ଗଳ ସୃଷ୍ଟିର ଲାଗି,
ଜ୍ୱଳନ୍ତି ଉଦାସ ନାହିଁ ତା ଦୁଃଖ ଗ୍ଲାନି;
ମରଣକୁ ହସେ ଶୁଣି ସେ ରୁଦ୍ର ବାଣୀ ।୫।

ତାର ଅପମାନେ ହସି ଉଠ ତୁମେ ରୁଦ୍ର !
ଦୀପ୍ତ ତା ମୁଖ ! କି ବୁଝିବ ମୂଢ଼ ଗୋ କ୍ଷୁଦ୍ର ?
ତା କୋମଳ ତାକେ କମ୍ପେ ପରାଣ,
ପୌରୁଷ ମୋର ଲଭେ ଅପମାନ,
ମୌନ ଜ୍ୱଳେ ସେ କାଳ ଅଙ୍ଗାର ହାଣି
ଶୁଣିଛୁ ରୁଦ୍ର ତୁମ ଅଲେଖର ବାଣୀ ।୬।

ଯେ ଦାନ ଦେଲ ହେ ତା ଗଳେ ପୁଷ୍ପମାଳା,
ହସିଲ ମୃତ୍ୟୁ ସପ୍ତ ସିନ୍ଧୁ ସାର;
ଶାନ୍ତ ହସିଲ ବେଦନାର ହ୍ରାସ,
ପଶ୍ଚାତେ ଭୋଗ ସକଳ ବିଳାସ,
ଢାଳିଲ ଅଶ୍ରୁ ପରାଣ ପ୍ରେୟସୀ ରାଣୀ,
ତୁଚ୍ଛ କରି ସେ ଗାଇଲ ରୁଦ୍ର ବାଣୀ ।୭।

"ମା ଭୈଃ, ମା ଭୈଃ" ବାଜିଲ ରୁଦ୍ର ଶଙ୍ଖ !
ପୁଲକି ଉଠିଲା ତବ ଭଙ୍ଗୁର ଅଙ୍ଗ;
ତୁମରି ବିଜୟ ପତାକା ବାନ୍ଧି ସେ,
କଠୋର କରିଛୁ ପରାଣ କୁଳିଶେ,
ଗିଳିବ ଗରଳ ପ୍ରାଣ ଅମୃତୁଁ ଜାଣି,
ଗାଇଲେ ନିର୍ଭୟେ ଶୁଣି ହେ ରୁଦ୍ର ବାଣୀ ।୮।

ମାନବ ମଶାଣେ କ୍ରନ୍ଦନ ଉଠେ ଯନ୍ତ୍ର,
ଧ୍ୱଂସର ଲୀଳା ! ହାହାକାର କରେ ମନ୍ତ୍ର ,
ବୈଶାଖୀ ବୋଲି ଅଶିବ ବରଷା,
ମୃତ୍ୟୁରେ ଦେବ ଅମର ଭରସା,
ସକଳ ତିଆଗି ସନ୍ନ୍ୟାସୀ ତବ ରୁଦ୍ର;
ବାନ୍ଧି ନେବ ଶିରେ ସକଳ ତୁଚ୍ଛ କ୍ଷୁଦ୍ର ।୯।



## * ରାଧାକୃଷ୍ଣ

—୧—

ନରରୂପେ ପରା ଧନେ ଈଶ୍ୱର ଦେବତା,
ନେବ ବୋଲି ସ୍କନ୍ଧେ ମିଥ୍ୟା ଅବିଶ୍ୱାସ ବ୍ୟଥା,
ରଚିଲ ଗୋପାଳ ଲୀଳା, ବୃନ୍ଦାବନ ରାସ ?
ନିତ୍ୟ ଶିବ ସୌନ୍ଦର୍ଯ୍ୟର ସରଳ ପ୍ରକାଶ ?
ଲକ୍ଷ କୋଟି ବ୍ୟାକୁଳାତ୍ମା ଅମୃ-ସ୍ନିଗ୍ଧ ଭକ୍ତି,
ଗୋପୀକାର ବେଶେ ପଦେ ପଡିଲା ଭକ୍ତି,
ବିପୁଳ ମାଧୁର୍ଯ୍ୟେ କରି ଜୀବନ ପ୍ରତିଷ୍ଠା,
ଶିଖାଇଲ ଶେଷେ ଅନାସକ୍ତ କର୍ମନିଷ୍ଠା ।
ସେ ଧନର ଯୋଗେଶ୍ୱର ପରମ ବୈଷ୍ଣବ,
ଆଜି କାମୁକର ରୂପେ ! ଏ କିବା ସମ୍ଭବ ?
ଲାଳସାର ବହ୍ନି ତେଜେ କୁତ୍ସିତ ମଳିନ !
ହରିଛି ମାନବ ଭୋଗେ ଦେବତାର ଚିହ୍ନ ।
ଅସହ୍ୟ ଅଜ୍ଞାନ ମିଥ୍ୟା କ୍ରୂର ଅପମାନ !
ମାନବେ ମାନବ-ଦେବ କର ପରିତ୍ରାଣ ।



—୨—

ବିଶ୍ୱ ବିରହିଣୀ ରାଧା, ପରମ ବୈଷ୍ଣବ !
ଗାଏ ଯୁଗେ ଯୁଗେ ଜୟ ଅସହବ ଭବ
ତୁମ ସ୍ୱପ୍ନ ଅପ୍ରାକୃତ ପ୍ରେମର ଗରିମା,
ସ୍ତମ୍ଭ ଅଶ୍ରୁ ପୁଲକର ପାଇ ନାହିଁ ସୀମା ।

* ରଙ୍ଗମଞ୍ଚରେ "କିଶୋର ଚନ୍ଦ୍ର" ଦର୍ଶନ କରି ।

ମହାଭବମୟି ! ନିତ୍ୟ ମନ-ବୃନ୍ଦାରଣ୍ୟେ
ମିଳନ ଅକାଙ୍କ୍ଷା ବହ୍ନି ଏକା ସଂଗୋପନେ
ଅଲେଖ ସନ୍ଧାନେ ଚଲ ! ତୁଚ୍ଛ ବ୍ୟଥା ସର୍ବ ।
ଅସହାୟ ମାନବର ତୁମେ ନା ଗୌରବ ?
ମାନବ ଲାଳସା ଦଗ୍ଧ ଅବନତ ପାପେ,
ସ୍ୱର୍ଗୀୟ ମାଧୁରୀ ଶୂନ୍ୟ ନର ଅଭିଶାପେ,
ବିଳାସ ସଙ୍ଗିନୀ ତୁମେ ଅଜି କଳ୍ପନାର,
ମାନବର ପାପେ ତୁମେ କ୍ଷତ କଦାକାର ।
ବୃନ୍ଦାବନ ରାସସ୍ଥଳୀ ଅଜି ଅନ୍ଧକୂପ
ନିତ୍ୟ ପ୍ରେମ ଯହିଁ ମିଥ୍ୟା କଳଙ୍କର ସ୍ତୂପ ।

—ଗ—

ଅଜ୍ଞାନ ତମିସ୍ରାଚ୍ଛନ୍ନ ମୋହାନ୍ଧ ମାନବ,
କଳ୍ପିତ ପ୍ରତିମା ଗଢ଼ି ନିତ୍ୟ ନବ ନବ,
ଲଗାଏ ମିଥ୍ୟାର ଲୀଳା ! ଶୈଶବ ଯେସନେ—
ନିରେଖି ଅପଣା ସୃଷ୍ଟି ବିହ୍ୱଳ ସ୍ୱପନେ ।
ଚିର ମୌନ, ନିର୍ବିକାର ! ଈଶ୍ୱର ଅଶ୍ରୟ !
ମନ୍ଦେ ହସ ଦେଖି ନବ ମିଥ୍ୟା ଅଭିନୟ !
ଅବା ଅପସର ଯାଅ ଶୂନ୍ୟ ହୁଏ ଧରା,
ଶୂନ୍ୟ ଦେବାଳୟ ଶୂନ୍ୟ ପୁଷ୍ପାଞ୍ଜଳି ପରା ?
ପୂଜା ପାଏ ମିଥ୍ୟା ଅବା ଅଜ୍ଞାନ ଅନ୍ଧାର,
ଦେବତା ଆସନେ ବସେ ସହସ୍ର ବିକାର—
ବିକୃତ ଈଶ୍ୱର ! ଭୋଗ ଲିପ୍ସା ଲଭେ ରୂପ ।

ମାନବ ଅପଣା ଲଗି ରଚେ ମୃତ୍ୟୁ କୂପ ।
ତବ ଅପମାନେ ନର ଲଭଇ ମରଣ,
ଅମୃ ପ୍ରବଞ୍ଚନା ଢଟେ ଶକତ ହରଣ ।

—୪—

ଅଜ୍ଞାନ ଅବିଦ୍ୟା ଭୁଲେ ପାରନ୍ତି ହେ ଧର,
ଅପ୍ରାକୃତ ପ୍ରେମ ତବ ଛାୟାବାଜି ପର;
ଅପସର ଯାଅ ତୁମେ କଳ୍ପନାରୁ ଦୂରେ,
ଶଙ୍ଖ ଘଣ୍ଟା ବାଜେ ମାନବର ଶୂନ୍ୟ ପୁରେ ।
ଅପ ଦେବତାର ପୂଜା ଗୌରବେ ବିହ୍ୱଳ,
ଅମୃତ୍ତୁପ୍ତି ଲଗି ନର ତାଲେ ଅଶୃଙ୍ଖଳ,
ସହଜ ଯା ରହିଯାଏ, ଗର ଦୁରବୋଧ,
ମାନବ ମିଥ୍ୟାର ସେବା ପ୍ରଭୁ ପ୍ରତିଶୋଧ ।
ବାକ୍ୟ ମନ ଅଗୋଚର ଜୀବନ ଦେବତା—
ତବ ପୂଜା ରଙ୍ଗ ମଞ୍ଚେ ? ପରିହାସ କଥା ।
ଅଜ୍ଞାନ ତମିର ଦୂର ଆଲୋକେ ଦେବତା,
ହୃଦୟ ମନ୍ଦିରେ ଜ୍ଞାନ କର୍ମର ବାରତା—
ଫୁଟି ଉଠୁ । ନର ନେଉ ସଂଗ୍ରାମର ଦୀକ୍ଷା;
ଶେଷେ ଶାନ୍ତି ବୃନ୍ଦାବନେ ମିଳନ ପ୍ରତୀକ୍ଷା ।

—୫—

ମାନବ ଅକୂଳ-ଅମ୍ବା-ବିରହିଣୀ-ରାଧା
ଲୋକ ଚକ୍ଷୁ ଅନ୍ତରାଳେ ଦଳି ଭୟ ବାଧା—

ଚଲେ ଶୂନ୍ୟ ଅଭିସାରେ ଶ୍ରାବଣ ନିଶୀଥେ,
"କୃଷ୍ଣ ଚିର ପ୍ରାଣାରାମ" ଅକୁଳ ସଙ୍ଗୀତେ ।
ନିତ୍ୟ ବ୍ୟାକୁଳତା ତାର, ଅଶେଷ ସନ୍ଧାନ,
ମିଳନର ଆଶା ବହି ଅସ୍ଥିର ତା ପ୍ରାଣ ।
ଜୀବନ ସଂଗ୍ରାମେ ଶତ ଘାତ ପ୍ରତିଘାତେ,
ମୃତ୍ୟୁ ଅବସାଦେ ଦୁଃଖେ ରଜନୀ ପ୍ରଭାତେ,
ଏକଇ ସଙ୍ଗୀତେ ଅଶ୍ରୁ ବିରହ ପ୍ରସାର !
ଅବିଦ୍ୟା କବଳେ ତଥ୍ୟ ଲଭଇ ବିକାର ।
ସାଧକ ବିରହୀ ଜନ ପ୍ରାଣାରାମ ଧନ
ଦେବତାର ରାସସ୍ଥଳୀ ନିତ୍ୟ ବୃନ୍ଦାବନ ।
ସାଧକ ଲଭଇ ପ୍ରୀତି-ମିଳନ-ଆସ୍ୱାଦ,
ବାସନା-ବିକୃତ-ଜନ ପ୍ରାଣ-ଉରମାଦ ।



## ଶିଶୁ ସୃଷ୍ଟି

ଜଗତର ଶିଶୁ ଆସ ଆସ ମୋର କୋଳେ ।
ଆସ ଏ ବକ୍ଷେ ପୀରତି ସେନେହ ଭୋଳେ,
ଆସ ଆନନ୍ଦ ! ଆସରେ ଜୀବନ ଉର୍ମି !
ସୃଷ୍ଟିର ଉତ୍ସ !        ସକଳ ଜୀର୍ଣ୍ଣ
        ହସି ହସି ଯାଅ ଚୁମି ।

ସେ ହାସେ ବିକଶେ ସୃଷ୍ଟିର ଲୀଳା ପଦ୍ମ ;
ସେ ଭାରତୀ ଶୁଣି ମରଇ ମିଥ୍ୟା ଛଦ୍ମ ;

ମରଣ୍ ମରଇ ଅସ୍ଥିର ପଦ ପାତେ,
ଜୀବନ ନିତ୍ୟ        ମନ୍ତ୍ର ଅମର
ଗାଅ ମଙ୍ଗଳ ପ୍ରାତେ !

ଦର୍ଶନେ ରୂପ ମରେ ମୋର ହାହାକାର,
ମୃତ୍ୟୁ ସ୍ପୃହାରୁ ସକଳ ଜୀବନ ସାର—
ଅମୃତ ଗୀତ ଅବାରତେ ପଡ଼େ ଝରି,
ମନେ ଭାଲେଁ ଅହା        ନିତ୍ୟାନନ୍ଦେ
ଅଜ୍ଞାଏଁ ହେଲେ ମରି ।

ଆସରେ ବକ୍ଷେ ସକଳ-ଜୀବନ-ଆଶା !
ଆସ ମୋ ଜୀର୍ଣ୍ଣ-କାବ୍ୟ-ଅଲୋକ-ଊଷା
ଛିନ୍ନ ହେ ତାର ସେ ପରଶେ ଯାଉ ଯୋଡ଼ି
ସବୁ ବନ୍ଧନ        ମରଣର ଭୟ
ଅବହେଳେ ଯାଉ ଖୋଲି ।

ନ ଶୁଣିବ ଆଜ ନ ଶୁଣିବ କାର କଥା,
ନ ଗଣିବ କାଲୁ ସଂଗ୍ରାମ କ୍ଷତ ବ୍ୟଥା;
ସକଳ ଆଜ ତୋ ଅର୍ଥ ବିହୀନ ବାଣୀ
ମର୍ତ୍ତ୍ୟର ଏଇ    ଚିର କଙ୍ଗାଳ
ସାଇତ ରଖିବ ଗୁଣି !

ତୁଚ୍ଛ ଶୋଚନା ତୁଚ୍ଛ ସକଳ ଭୀତି;
ପୂର୍ଣ୍ଣରେ ଆଜ ଜୀବନ ଛିନ୍ନ ଗୀତି,
ପରାଣ ପାଏ ପୂର୍ଣ୍ଣ ! ନୁହେ ରେ ଖାଲି !
ଆସ ଆନନ୍ଦ        ନିତ୍ୟ ଜୀବନ
ବକ୍ଷେ ଯାଅ ମୋ ଢାଳି !

ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝରି,
ପଭଞ୍ଜ ପବନ ବାତ୍ୟା ନିଏରେ ଉଡ଼ି;
ହସେ ପୁଣି ଊଷା ଶୁଭେ ଆଲୋକର ଗାନ !
ନବ ନବ ରୂପେ ପରାଣ ଏ ଭୂମେ
ବିକଶିତ ଭଗବାନ ।

ହସି ଉଠ ଚିର ଅନ୍ଧାର ଦୀପ ମମ !
ଭ୍ରଷ୍ଟ ଭ୍ରାନ୍ତ ଶ୍ରାବଣ ବଉଦ ସମ;
ନିଅ ମୋ ଜୀବନ ସବୁ ସମ୍ବଳ ଧନ,
ଦିଅରେ ଆଶିଷ ! ସବୁ ମଙ୍ଗଳ—
ଦେବ ହସି ପୁରାତନ ।



## ଉତ୍ସବ ଦୀପ

ଦୁଃଖେ ତୁମର ଉତ୍ସବ ଦୀପ ଦେବତା,
କେତେ ମତେ ଉଠେ ଜଳି;
ଦୁଃଖୀର ଲୁହେ ତୁମର ରତ୍ନ ଆସନ
ଦବାନଳି ପଡ଼େ ଢଳି !
ଦୁଃଖୀର ସଖା ଶିରେ ବହୁନିଅ ତ୍ରାସ,
କଙ୍ଗାଳ ମ୍ଳାନ ଅଧରେ ଫୁଟାଅ ହାସ;
ଏ ଚିର ଅଧମ ତବ ମହାଦାନ ଜୀବନେ,
ପାରେ ନାହିଁ ତଳେ ଜଳି;
ଉତ୍ସବ ଦୀପ କେତେ ମତେ ଉଠେ ଜଳି !
ଜୀବନ ଯଜ୍ଞେ ଢାଳିଦିଅ ଦେହୁଁ ଶୋଣିତ,

ଘାତକଙ୍କୁ ଦଅ ଅପଣାର ଶର ବଢ଼ାଇ;
ଦୁର୍ଦ୍ଦିନେ ଶୁଭେ ତୁମର ନୂପୁର ରଣିତ
ପାନ୍ଥଙ୍କୁ ଦଅ ଅନ୍ଧାରେ ପଥ ବତାଇ ।

ଅଶ୍ରୁ ବେଦନା ପୋଛି ଯାଅ ନିଜ କରେ ହେ,
ତୁମ ମହାଦାନ ଅନ୍ତରେ ନାହିଁ ଧରେ ହେ,
(ତବ) ଅଲୋକ ସୂର୍ଯ୍ୟ ଉଇଁଲେ ପରାଣେ ପରେ ହେ,
ମୃତ୍ୟୁ ଦୈନ୍ୟ ଅନ୍ଧାର ପଡ଼େ ବଳି !
ଉତ୍ସବ ଦୀପ କେତେ ମଠେଁ ଉଠେ ଜଳି ।

ମଙ୍ଗଳମୟ ନିତ୍ୟାନନ୍ଦ ଜ୍ୟୋତି !
କର ଦରିଦ୍ରେ ତବ ଇଚ୍ଛାର ଦାସ !

ଧନ୍ୟ ହେଉ ହେ ତୁମରି ଅଲୋକେ ଜୀବନ,
ସବୁ ଜଞ୍ଜାଳ ସକଳ ଗ୍ଲାନି ପ୍ରାସ ।
ଦରଶନ ଦଅ ଉଜ୍ଜ୍ୱଳ ହେଉ ପୁର,
ଚିର ପ୍ରେମୀ ତୁମାର ସକଳ କର ହେ ଦୂର

ସକଳ ମୋ ପ୍ରିୟ ଯାହା ଏ ଜୀବନେ
କର ପ୍ରଭୁ ଆପଣାର,—
ତୁମ ପୀରତିରେ ଯାଉ ଏ ଜୀବନ ଚଳି;
ଉତ୍ସବ ଦୀପ କେତେ ମତେ ଉଠେ ଜଳି !

ଲୋଡ଼ିଲି ଯାହା ମୁଁ ଦେଇଛ ସକଳ ଦେବତା,
ଲୋଡ଼ି ନାହିଁ ବୋଲି ତୁମ ଅମୃତ ପ୍ରୀତି ହେ,
ପ୍ରେମମୟ ରୂପ ଲୁକ୍କାଇଛ ମୋର ଭରତା,
ଗାଇନାହିଁ ବୋଲି ତୁମର ବିଜୟ ଗୀତ ହେ;
ଏ ଛଳନା ସ୍ୱତ ଚିର ପ୍ରିୟ ନାହିଁ ଯାଚେ ହେ;

ତୁମର ଦ୍ୱାରଦେ ସକଳ ବନ୍ଧମାଗ୍ରନ୍ତେ ହେ;
ଦେଇଛ,ଦେଇନ ଆପଣାକୁ ବୋଲି ଲଜେ ହେ
ମରୁଥାଏ ନୀତ ଅନ୍ଧାରେ ଶତ ଦଳ !
ଉତ୍ସବ ଦୀପ କେତେ ମତେ ଜଳେ ଜଳ ।



## ଭିକ୍ଷୁ ଗୀତ

ଯୁଗ ଯୁଗ ଧରି ଦେବଦୂତ ଅବତାର,
ବୁଦ୍ଧ, ଖ୍ରୀଷ୍ଟ ଗୌରାଙ୍ଗ ଏ ଭୁବନ କଲେ ସାର;
ଆପଣା ରକତେ ହରିବାକୁ ଭବଭୟ !
ଅବନତ ଶିରେ ଗାଇଲା ଭିକ୍ଷୁ,
"ଜୟ ହେ ଦେବତା ଜୟ ।"

ଯାଇଛୁ କି କହ ଧରଣୀ ବେଦନା ତ୍ରାସ ?
ଲୁଚିଲା ଏ କାଳ କରେ ନାହିଁ ଉପହାସ ?
ଧରଣୀ ବକ୍ଷ ଶୋଣିତେ ନୁହେଁ କି ସିକ୍ତ;
ଚିର ବୁଭୁକ୍ଷୁ ମାନବ କି ନୁହେଁ ରିକ୍ତ ?
ଏ ଗଗନ ଆଜି ନୁହଇଁ କି ତମୋମୟ ?
ଅବନତ ଶିରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ଆଜି ସେ ବକ୍ଷୁ ରୁଧିର ପଡ଼ଇ ଝରି,
ନୟନ ଯୁଗଳ ଅଶ୍ରୁରେ ଉଠେ ଭରି,
ଅସ୍ଥିର ପଦେ ଶୂନ୍ୟକୁ କରି ଲକ୍ଷ୍ୟ,
ହତ୍ୟାର ମୁଖେ ପତାଇ ଦେଉଛୁ ବକ୍ଷ;

ଭିକ୍ଷା ମିଳେ କି ଅପଣାକୁ କର କ୍ଷୟ ?
ଅଶ୍ରୁ ନେତ୍ରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।"

ଯେବେ ମୁକ୍ତିର ପତାକା ବହୁଛ ହାତେ,
ବରାଭୟ ଗାଇ ଚାଲିଛ ଜୀବନ ରଥେ,
ଲାଗିନା କି କହ ହିଂସା ଶୋଣିତ ମଶୀ ?—
ଭିକ୍ଷୁ କହଇ ହସି,
"ଦୈବର ଏଯେ ଅମୃତ ବରାଭୟ ।"
"ଦୀନ ଜନ ଆଶା, ଜୟ ହେ ଦେବତା ଜୟ !"

ଦେବତାର ଦୂତ ଚାଲିଯାଏ ଧରାପରେ;
ଦୁଃଖୀ ପରାଣେ ପ୍ରୀତି ଆଶା ନାହିଁ ଧରେ ।
ଦୁଃଖ ଭୂମିରେ ନମେଷୋଜ୍ଜ୍ୱଳ ଚନ୍ଦ୍ର;
ଝଞ୍ଜା ନିରାଶାରେ ଗରଜେ ବଜ୍ର ମନ୍ତ୍ର !
ନମେଷକେ ପୁଣି ସକଳ ଭୂମିରେ ଲୟ;
ମନ୍ଦେ ବିହସି ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ ।

"ଅମା ଅନ୍ଧାର ମୃତ୍ୟୁ ଦହନ ଭେଦ,
ଦେବତାର ଦୂତ ଧରାପରେ ଯାଏ ଖେଦ;
ତା ପଦ ପରଶେ ହସଇ ପଦ୍ମ ପୁଣ୍ୟ,
ମନ୍ତ୍ର ତା ବାଣୀ ମୁଖରିତ କରେ ଶୂନ୍ୟ;
ତାହାର ପରଶେ ଧରଣୀର ପାପକ୍ଷୟ !"
ମୁଗ୍ଧ ନେତ୍ରେ ଗାଇଲା ଭିକ୍ଷୁ
"ଜୟ ହେ ଦେବତା ଜୟ !"

"ନ ମିଳବ ନାହିଁ ମିଳୁ ପଟଛ କାହିଁ ଭିକ୍ଷା,
ଭୁବନର ପାପେ ଅମ୍ଭ ଅଦ୍ଭୁତ ଦୀକ୍ଷା !
ଦେବତାର ଦୂତ ଅପଣା ଶୋଣିତ ଢାଳି,
ପାପଭୂର ବନ୍ଧୁ ପୃଷ୍ଠେ ଗଲେଣି ଚ୍ଛାଳି
ବକ୍ଷେ ଏସନେ ବନ୍ଧ୍ର ନେଲେ ଶତଚୟ୍ୟ !
ସେ ପଥ ପଥିକ ଦୀନ ଭିକ୍ଷୁ !
ଜୟ ହେ ଦେବତା ଜୟ !"



## ଦୈନ୍ୟ ପ୍ରକାଶ

ସକଳ ଦୃଷ୍ଟି ଏଡ଼ି ଏଥିଯାଉ
ଜୀବନ ବନ୍ଧୁ ମୋ ଜୀବନ ବନ୍ଧୁ;
ସ୍ୱାର୍ଥ ଏ କାଳ ମଳୀନ ଚିହ୍ନ
ନ ଦେଉ କନ୍ଧୁ ଗୋ ନ ଦେଉ କନ୍ଧୁ ।
ମୁଁ ଗୋ, କାସାର କମଳ, ରଜନୀଗନ୍ଧା,
ମୋ ଜୀବନ ପ୍ରଭୁ ଏକଇ ସନ୍ଧ୍ୟା !
ସ୍ୱରଗେ ଚଳିବ ଦୂର ପରବାସୀ
ସ୍ୱାର୍ଥ ସ୍ୱଷ୍ଟେ ନିମେଷେ ରହୁ ଗୋ ନିମେଷେ ରହୁ ।
ଦେବାର ଗର୍ବ ନାହିଁ ମୋର କିଛୁ
ଦୁଃଖ ନାହିଁ ମୋ ଶୋଚନା ନାହିଁ ।
ଏକଇ ଦିନର ହାସ୍ୟ ଅଶ୍ରୁ
ସଞ୍ଚିତ ମୋର ତୁମରପାଇଁ ଗୋ ତୁମରପାଇ ।

ତୁମ 'ବାଣୀ ବହ୍ନ ଫୁଟିଛୁ ଝରଛୁ
ତୁମ ସଙ୍କେତ ନୀରବେ ଗୁହ୍ନି ଗୋ ନୀରବେ ଗୁହ୍ନି;
ଭୁଲିଛୁ ଅଲେକ ଘନ ଅନ୍ଧାର
ସବୁ କୋଳାହଳ ଦୁଃଖ ନାହିଁ ଗୋ ଶୋଚନା ନାହିଁ ।
ପ୍ରାଣ ବୁଦ୍‌ବୁଦ ହେ ମହାସିନ୍ଧୁ !
ଲୁପ୍ତ ସେ ହେଉ ହେ ମୁ କ୍ଷୀଣ ବିନ୍ଦୁ,
ହେ ମହା ମହେଶ ନିରେଖି ହାସ୍ୟ,
ବିକଟ ଅନଳ ମିଶିବ ଭହିଁ ଗୋ ମିଶିବ ତହିଁ !

---

## ସୁପ୍ତ ଦେବତା

(କୌଣସି ନର-ରାକ୍ଷସ ଉଦ୍ଦେଶ୍ୟରେ ପ୍ରାର୍ଥନା)
ଅଜ ହତ୍ୟାରକତେ କଳୁଷିତ ଯାର କର,
ପରାଣେ ଯାହାର ପ୍ରବଳ ଶୋଣିତ ତୃଷା,
ତୁମ ଅମୃତ ପୀରତ ପରାଣେ ଭର
ଭପର ଜୀବନେ ଅଣ ଅମୃତ ଜ୍ୟା ।

ଏ ମାନବଲାଗି ଶୁଷ୍କ ଲୋତକ ଯାର,
ସ୍ୱାର୍ଥର ମୋହେ ହୃଦୟ୍ନ ନ ଯାଏ ଗଲି,
ନ ଛୁଏଁ ଯା ଶତ ଦୁର୍ବଳ-ହାହାକାର,
ସୁନ୍ଦର ଯାର ପରାଣେ ଯାଇଛୁ ଜଳି—
ଢାଳିଦାଅ ପ୍ରଭୁ ତୁମର କରୁଣା ବିନ୍ଦୁ,
ପୀରତ ସବତେ ସେ ଭୂମିକର ହେ ସିକ୍ତ,
ଡାକ ନାଅ ବାରେ ଯହିଁ ପ୍ରାଣ-ମହାସିନ୍ଧୁ,
ବ୍ୟର୍ଥତା ତାର ଗୁଟେ ନାହିଁ ସେ ରୂପ ରିକ୍ତ !

'ଅପମାନେ ପୁଣି ଅସ୍ତ୍ର ନିର୍ଯାତନେ,
ମରେ ଯେ ନିଃସ୍ବ ଏ ଶିବ ସୃଷ୍ଟି ଦଳି,
ମୈତ୍ରୀ କରୁଣା ଭର ବିକୃତ ମନେ,
ତୁମର ଅଶିଷ ତା ଶିରସି ପଡ଼ୁ ଝର !

ବିଲୋଳ ରସନା ଦଂଷ୍ଟ୍ର-କରାଳ-ମୁଖ
ଦେବତା ଅସନ ଅବର ଅଜି ଯେ ରୁଷ୍ଟ
ମାନବ ଶତ୍ତେ ନିବସି ଅଣିଇ ଭ୍ରାନ୍ତ
ଶାନ୍ତ କର ହେ, ସୃଷ୍ଟିରେ ଅଣି ଶାନ୍ତ !

ବହାଇ ଦଅ ତା ଶୁଷ୍କ କପୋଳେ ଲୁହ,
ଜୀର୍ଣ୍ଣ ବିକଳ ମୂକ ଏ ମାନବ ଲଗି,
ତୁମ ଅଶ୍ରୁରେ ତା ପରାଣ କ୍ଷତ ଧୁଅ,
ଚିର ଦରିଦ୍ର କରୁଣ ନେତ୍ରେ କହ ତୁମେ ରହ ଜାଗି !

ନିଭିନାହିଁ ଯାର ରୁଷ୍ଟ ବିକଟ କ୍ଷୁଧା
କହ ଯାଇ ତାକୁ ଗୃହ ସମୂଳ ହୀନ—
ମରଇ ମାନବ ପଥେ ଘାଟେ ଫାଟେ ମୁଧା !
ସବୁ ତା ପୁଣ ରକତରୁ ନୁହେ ଭିନ ।

"ସୁପ୍ତ ଦେବତା !" ପୀଡ଼ିତ କଣ୍ଠେ ବାଜେ;
କାତର କଣ୍ଠେ କବି କହେ "ପ୍ରଭୁ ସୁପ୍ତିତ ନାହିଁ ସାଜେ ?"
"ଅଜି ଏ ଦୁଃଖ ଦୁର୍ଦ୍ଦିନେ ଉଠ ଜାଗି !"
"ପଶୁ ସମ ମୂକ ନିପୀଡ଼ିତ ଜନ ଲଗି !"



## ଖଣ୍ଡିତା

ଆଜ କାହା ଲଗି ଯତନେ କବରୀ ରଚନା ?
କୁସୁମ ଭୂଷଣେ ନାହିଁ ତଳେ ଆଜ ବାସନା,
ରଖ ସଖି ତୋର ମଲ୍ଲୀ କରବୀ ଯୂଥିକା,
ମରଣର କୋଳେ ମୁଦେ ମୁଁ ନୟନ ଲତିକା !
ପୋଛି ଦିଅ ସଖି ଲକ୍ଷାରସ ମୋ ପୟରୁ,
ବଧୂଳିର ରାଗ ନିଭାଇ ଦିଅ ମୋ ଅଧରୁ ।
ନ ଚହିଁଲ ଫେର ପ୍ରିୟତମ ଯେବେ ଥରେ ଗୋ
ଜାଣି ଜାଣି ଯେବେ ହାଣିଗଲ ମରମରେ ଗୋ
ସନ୍ଧ୍ୟା ସମାନ ଯେବେ ଗଲ ଏଇ ପଥେ ସେ,
ଏଡ଼େ ନିଷ୍ଠୁର ଉଦାସୀନ ସଖି ସତେ ସେ ।
ବାତାୟନ ପଥେ ଚାହିଁଥିଲି କେଡ଼େ ସରାଗେ,
ଶ୍ରବଣୁ କୁସୁମ ଖସି ପଡିଲ ଯା ତା ଆଗେ,
ଲଜେ ଅଭିମାନେ ହୃଦୟ ହୁଏ ଗୋ କରତ;
ନ ଚହିଁଲ ଯାହା ନ ଶୁଣିଲ ଥରେ ଆରତ ।



## ଦୂରର ଯା ଥିଲ

ଦୂରର ଯା ଥିଲ ଅନ୍ତରେ ଆଜ ପ୍ରିୟ
ଉତ୍ସବଦୀପ ମନ୍ଦରେ ଜାଳିଦିଅ ।
କାହିଁକି ଶୋଚନା ? ଅଶ୍ରୁ ପୋଛ ତୁ ଦେବ,
ଅନ୍ତରେ ତୋର ନିତ୍ୟ ଅମର ଛବି !

ଗାଅ ଗାଅ ତୋର		ନବ ସଙ୍ଗୀତ
ସେ ପରଶ ଅନୁଭବ ।
ଶତ ବସନ୍ତ ଉତ୍ସବ ତୋର ପ୍ରାଣେ,
ଶରତ ପ୍ରଭାତ ତୋ ପୀରତି ଅଭିସାନେ
ଢାଳଇ ଅଲେକ, ଶୁଭ୍ର ଶେଫାଳି ଫୁଲ !
ଆଜ ଅନନ୍ଦ ପୀରତିର ନାହିଁ ତୁଲ !
ବିରହ ମିଳନ		ଏକାକାର ଆଜ
ପରାଣି ହସଏ କୂଳ ।
ମୃତ୍ୟୁ ଆଜରେ ଅମୃତେ ଗଲା ମିଶି,
ଜୋଛନା ହାସରେ ମିଶିଗଲା ଅମାନିଶି,
ବାଧା ବନ୍ଧନ ସବୁ ଗଲା ଆଜ ତୁଟି,
ମଉଳିଲା ଅହା ସକଳ ଭ୍ରାନ୍ତ ସୃଷ୍ଟି ।
ପୀରତି ପୂର୍ଣ୍ଣ		ଅଲେକେ ହସଇ
ପରାଣି କମଳ ଫୁଟି !

[ ୧୯୩୧ ]



## ବରଷା ଆସିଛି ଦୁଆରେ

ଆଜ, ବରଷା ଅସିଛି ଦୁଆରେ
ଆଜ କେ ରଚଲ		ନୃତ୍ୟ ନବୀନ
ତୋର, ଅନ୍ତରେ ପୁଣି ବାହାରେ ।
ଆଜ ମରୁଭୂମେ ଜୀର୍ଣ୍ଣ ଏ ଦେଶେ,
ଚିର ମଙ୍ଗଳ ସ୍ରଷ୍ଟାର ବେଶେ !

ବାଙ୍କର ମରଣ ସଞ୍ଜିବନୀ
ତା ବାଣୀ କବ ତୁ ସ୍ମୃହାରେ । ୧ ।
ଜୀର୍ଣ୍ଣ ଋକ୍ଷ ଧ୍ୱଂସରେ ଅଜ
ନବୀନ ଜୀବ ସେ ସଞ୍ଚାରେ ।
ଶାନ୍ତ ଜଦକ ମରଣରେ ତାଲ,
ଚିର ବୈରାଗୀ ଦୂରେ ଯାଏ ସ୍ୱଲ
ଚିର ଅନନ୍ଦ ନିର୍ବିକାର ସେ
ସ୍ମୃହେଁନାହୁଁ ଫେରି ବାହାରେ ।୨।
ଶୁଣି ଅଗମନୀ ବିଶାଳ ଶୂନ୍ୟେ
ଜଠେ ବିଶ୍ୱର ଛନ୍ଦ,
ବୃକ୍ଷ ଲତିକା ନୀରବ ଶୈଳ—
ତଟିନୀ ସଚଳ ଅନ୍ଧ !
ମଟରେ, ମୃତ୍ୟୁର ଅବସାଦ ।
ତାର, ସଙ୍ଗୀତେ ଫୁଟେ ଶୈଳେ କୁସୁମ
ଶୂନ୍ୟରେ ପରମାଦ !
ଅଗୋ ମଲ୍ଲିକା ମାଳତୀ ଚମ୍ପା
ରଜନୀଗନ୍ଧା—ତା ଅନୁକମ୍ପା
ଲ୍ଭିଗିଚ କ ମମ ଦଗ୍ଧ ହୃଦୟେ
ଢହନା ମିଳିବ ସ୍ୱାହାରେ । ୩ ।
ସ୍ନିଗ୍ଧ ଶ୍ୟାମ ଶୀତଳ ସ୍ପର୍ଶେ
ଉଜ୍ଜ୍ୱଳ ହେବ ପୁର,
ଙ୍କଞ୍ଜାଳ ଗ୍ଲାନ ଦୁର,
ଅଜ ବିଶ୍ୱର ପ୍ରୀତି ଅନନ୍ଦେ
ନିମେଷେ କରିବ ଯୂର । ୪ ।

ସୌଧ ଶୀର୍ଷେ ତନ୍ୱୀ ସଜଳ—
ନୟନେ ପୂର୍ଣ୍ଣ ଆଶା
ଫୁଟାଇଲ୍ କିଏ ଶୁଷ୍କ ଚାତକ—
କିବା କଣ୍ଠର ଭାଷା ?
ଆସ ହେ ବରଷା ବିଶ୍ୱ-ଜୀବନ,
ବିଦ୍ୟୁଲ କିବା କରିବ ବରଣି,
ନବୀନ ହେଉ ହେ ସକଳ ମଳିନ
ଅରୂପ ବିଶ୍ୱବିହାରେ;
ଆଜି, ବର୍ଷା ଆସିଛି ଦୁଆରେ ।

[ ୧୯୩୨ ]



## ଅଭିସାରିକା

ହସଇ ଜୋଛନା ବହଇ ମଳୟ ମନ୍ଥର,
ବକୁଳ ଗନ୍ଧେ ସକଳ ଭୁବନ ଅଧୀର;
ଧରୁନାହିଁ ମନ ଘରେ ଚଳେ ଆଜି ସଜନି,
ଡାକେ ଅବା ଦୂରେ ମୁଗ୍ଧ ଆକୁଳ ରଜନୀ,
ଡାକେ ତା ବଂଶୀ ସୁଦୂର ତମାଳ କୁଞ୍ଜେ;
ଡାକଇ ଅଧୀରେ ମରେଁ କୁଳବାଳା ମୁଁ ଯେ ।
ପୁରଜନେ କାଲି ଦେବେ ନାହିଁ ମୋତେ ବାସ,
ବାଧଇ ଆଜି ଗୋ ନିୟତିର ଉପହାସ ।
ରଣ ରଣ ସହ ରୁଣିତ ନୂପୁର ଚରଣୁ
ଆସେ ପୁଣି ଡାକ ସ୍ନିଗ୍ଧ କୁଞ୍ଜ କାନନୁ,

କବରୀ-କୁସୁମ ଶିଥିଳ କି ସହି କହନା ?
ମନଲକ୍ଷି ଅବା ଗଣ୍ଡମକରୀ ରଚନା ?
ସେତ ରୂପ ଖଣି ବିଶ୍ୱ ହେବ ଟୋ ଦାହି,
ସ୍ଫୂର୍ତ୍ତି ମୋ ରୂପ ଯୋଗ୍ୟତାର କି ସହି ?
ଯିବ ଯିବ ସହି ଅକୁଳତା ତଳେ ସହେନା;
ତୀବ୍ର ସେ ଡାକେ ଘରେ ମନ ଅଜ ରହେନା ।

[୧୯୩୧]

---

## କାରାବାସ-ସ୍ୱପ୍ନ

୧— ଦୂର କାରାବାସେ ମଧୁର ତାହାର ସ୍ମୃତି,
ନିଶବଦ ରାତେ ସଙ୍ଗୀତ ଅନୁଭୂତି,
ଜୋଛନା ଅଲେକେ ରଜନୀଗନ୍ଧା ବାସ,
ଅତୀତ ଜୀବନ ଅମର ମଧୁର ପ୍ରାସ ।
ଦୂର ପରବାସୀ, ହେ ପଥିକ ରହ ରହ !
ଦେଖିଛ କି ତାକୁ କେବେ ଏ ଜୀବନେ କହ ?
ଜ୍ୟୋତ୍ସ୍ନାସମ ତା ନୟନ କରୁଣ ବିଭା,
ତା ଅଧର ହସ ଯେସନେ ତରୁଣ ଦିବା,
ତା ରୂପ ମାଧୁରୀ ପିଇଛୁ ହୋଇଛୁ ଧନ୍ୟ,
ମରମୁଁ ଅମର ପଦବୀରେ ହେଲ ଗଣ୍ୟ ।
ଦେଶର କାଳର ମହା ବ୍ୟବଧାନ ହାଣି
(ସେ ମୋ) ଜାଗ୍ରତ ପ୍ରାଣେ ଅଶ୍ରୁ ଜଡ଼ିତ ବାଣୀ !
ପ୍ରଳୟ ତମିରେ ଉଜ୍ଜ୍ୱଳ ଶିଖା ସମ,
ସକଳ ପ୍ରିୟର ମୋର ସେ ଯେ ପ୍ରିୟତମ ।

୨— ଭୁଲିଯିବ ତାକୁ ? ଭୁଲିବ କେସନେ କହ ?
ମୃତ୍ୟୁକୁ ହାଣି ରୂପ ତାର ଅହରହ—
ସତ୍ୟ ସମାନ ପ୍ରତିଭାତ ନିତି ଦବା !
ଜୀବନ ଅଲେଖେ ଅମର ପଦ୍ମ କବା !
ଗଲଣି ସେ ଭୁଲି ? ପଡ଼େ ନାହିଁ ଥରେ ମନେ ?
ନାହିଁ ମୋ ଶୋଚନା କହି ଦେବ ତାକୁ ତମେ—

ଭୁଲିବାକୁ ହେଲେ ବଢ଼ିଯାଏ ମୋର ତ୍ରାସ,
ଅପଣାକୁ ଅବା କରେ ମୁହିଁ ଉପହାସ ।
କୋକିଳ କଣ୍ଠେ ଦୂରୁ ସେ ସେ ଅସେ ଭାସି,
ତାର ଲାବଣ୍ୟ ବହେ କୁଶଳୟ ରାଶି,
ଦୂର ଦିଗନ୍ତରେ ମଳୟ ଅଣେ ତା ସ୍ପର୍ଶ,
ମାଧବୀ ଜୋଛନା ତାର ପୀରତି ଆଦର୍ଶ ।
ଭୁଲି ଯାଉ କହି ନିଶୀଥ ସ୍ୱପନ ପରି
ନିଃସ୍ୱ ରତନ ସ୍ମୃତି ସଦା ଥିବ ଧରି ।

୩— ମର୍ତ୍ତ୍ୟ ମାନବ କି ବୁଝେ ଜୀବନ ବ୍ୟଥା ?
କହିବ ତରୁଣ ଜୀବନର ଚପଳତା !
ଯୌବନ ତୁଲେ ସକଳ ବିକାର ଶୂନ୍ୟ,
କାଳର ପରଶ ସକଳକୁ କରେ ଚୂର୍ଣ୍ଣ ।
ତା ରୂପ ଅଲେଖେ ପରିଣତି ଥରେ ମାଜି,
ମାଧବୀ ଜୋଛନା ସଙ୍ଗୀତ ତାରେ ବାଜି,

ଭୁଲିଯିବା ତାକୁ ଭୁଲିବା ଜୀବନ ସଜ୍ଞା,
ଅଶ୍ରୁ ସାଗରେ ସ୍ନିଗ୍ଧ ସେ ନୀରବତା !
ଚିର ତୃଷାର୍ତ୍ତି ପୀୟୂଷ ସାଗର ଗ୍ରହିଁ—
ଫେରି ଆସିବାର ସମ୍ଭବ ଅବା କାହିଁ ?
ପୁଣ୍ୟ ମାଧୁରୀ ଗୁଣି କହ କାହିଁ ତୃପ୍ତି ?
ସଙ୍ଗୀତ ପଦେ ଶୁଣି ଆସେ କାହୁ ସୁପ୍ତି ?
ଗୁଣିନ୍ତି ସେ ଥରେ ଯୌବନ ରୂପ ବିଷ
ତୃପ୍ତ ଧନ୍ୟ ଜଳି ପୋଡ଼ି ଅହର୍ନିଶ !

୪— ସନ୍ଧ୍ୟା ଆଲୋକେ ସ୍ନିଗ୍ଧ ତାରକା ଫୁଟେ !
କମଳ କାନନେ ଫୁଟେ ଅଗଣିତ ଫୁଲ,
ମଙ୍ଗଳ ଉଷା ! ନିଶୀଥ ଶଯ୍ୟନ୍ତୁ ଉଠେ,
ନ ଦିଶଇ କେହି ତା ରୂପର ସମତୁଲ !
ଲକ୍ଷ ତାରକା ତା ରୂପେ ଲଭିବେ ଲାଜ,
ସୃଷ୍ଟିର ଉଷା ଶଙ୍କିତ ଦେଖି ବ୍ୟାଜ,
ତା ଚରଣ ତଳେ ଲୋଟିବାକୁ ଶତ ଫୁଲ,
ଏ ପରାଣ ସମ ନିରତରେ ସମାକୁଳ !

ଶାରଦ ଗଗନେ ନୀରବ ସନ୍ଧ୍ୟା ପରି,
ତା ଅନାଉଣିରେ ଜୋଛନା ଉଠଇ ଥରି,
ତାରକା ଖଚିତ ନୀଳ ନଭ ଓଢ଼ଣୀ;
ଟାଣି ଦିଏରେ ଆସେ ସିନ୍ଧୁ ବକ୍ଷେ ଚଳି ।
ମଙ୍ଗଳ ରୂପ ପୁଣ୍ୟ ଅଧର ହାସ !
ମରିବାକୁ ତହିଁ କବି ଚିର ଅଭିଳାଷ ।

୫—ଯୌବନ ଶିଖା ଯନ୍ତ୍ର କରଇ ଜଗ,
ତରୁଣ ସ୍ୱପ୍ନ ପଶ୍ଚାତେ କାଳ ପଗ,
ପରିହାସ କରେ ବଦ୍ରୂପ ଜଗ ଅଙ୍ଗ ?
ଜୀବନ ସ୍ୱପ୍ନ କେତେ ରହୁଯାଏ ବାକି !
ଶୁକ୍ଳ ଧରଇ ସ୍ନିଗ୍ଧ ଚିକୁର ଦାମ,
ସକଳ ଶୋଭାର ମୃତ୍ୟୁ ନିଯୁତ ବାମ;

ମଉଳି ପଡ଼ଇ ସଜଳ ନେତ୍ର ବିଭା,
କାଳ ଦୁର୍ଦ୍ଦିନେ ଯେସନେ ତରୁଣ ଦିବା ।
କାନ୍ତ ଅଧର ଜବା ପାଣ୍ଡୁର ଦଶେ,
ପୀୟୂଷ ହାସ୍ୟ ମୃତ୍ୟୁ ତମିରେ ମିଶେ !
ରୂପ ପାରିବାରେ ଉଏଁ ନା ତାରକା ଶତ,
ଉତ୍ତର ବାଆ ଅନ୍ତର କରେ କ୍ଷତ,
ସବୁ ନଶ୍ୱର ତା ଦେଖୁଁ ପଡ଼ିଲେ ଝରି,
[ଜାଗେ] ପ୍ରୀତି ଅମୃତ ଶୁକ୍ର ତାରକା ସରି !

୬—ହେ ପଥିକ ଯେବେ ବୁଝି ନାହିଁ ଥରେ ପ୍ରୀତି,
ଶୁଣି ନାହିଁ ଯେବେ ନୀରବ-ନୟନ-ଗୀତି,
ଲଭି ନ ବାସନା ପୁଣ୍ୟ ପୀରତି ବିଭା,
କେସନେ ଜାଣିବ ଜୀବନାମୃତ କିବା ?
ପ୍ରାଣ ପାରିବାରେ ଗହନ ମୃତ୍ୟୁ ଭେଦ,
ପୀରତି ପଦ୍ମ ହସଇ ତମିର ଛେଦ,

କଲପନା ନୁହେଁ, ସତ୍ୟ ସେ ଅନୁଭବ,
ଜୀବନ ମୃତ୍ୟୁ ସକଳର ଗୌରବ !
କାଳର ପରଶେ ବଢ଼ଇ ପୀରତି ଆୟୁ
ଅଭିନବ ରୂପ ଜଗି ବନ୍ଧୁଅଣେ କାହ୍ନୁ,
ଯା ଲାଗି ନିଃସ୍ୱ ଜୀବନଟି ହୁଏ ଧନ୍ୟ
ପୌଷେ ପୁଷ୍ପ ହସିତ ବୃନ୍ଦାରଣ୍ୟ !
କହ୍ନୁବଟି ତାକୁ ଭେଟିଲେ ତା ଲାଗି ପରି
ଜୀବନର ଦ୍ୱନ୍ଦ୍ୱ ସହଜେ ପଡ଼ଇ ଧରି !

୨—ଦୁର୍ଦ୍ଦିନ ଶତଶିର ପରେ ଯାଏ ବହି,
ଅନ୍ତର ବ୍ୟଥା ଅଶ୍ରୁରେ ନୁହେ କହି,
କ୍ଷିପ୍ର ସିନ୍ଧୁ ପ୍ରଳୟେ ଉଠେନ୍ତି ମାତି.
ସ୍ମରଇଁ କାହିଁକି ଶାରଦ ଶୁଭ୍ର ରାତି ?
ଏ ଜୀବନେ ଯାର ପାହନ୍ତି ସ୍ୱପ୍ନ-ନିଶା,
ପୀରତି ପୀୟୂଷେ ଗରଳ ହୋଇଛି ମିଶା,
ନିଠୁର ନିୟତି କରେ ଯାକୁ ଉପହାସ,
ଅତୀତର ସ୍ମୃତି କାହିଁ ପାଇଁ ଦିଏ ତ୍ରାସ ?

ଶୁଖିଲ କଣ୍ଠ ! ନ ମିଳେ ସଲିଳ କଣା !
ଅନ୍ତୁର ସ୍ମୃତକ କାହିଁପାଇଁ ଡେବେ ବଣା ?
ମରଇ ଅକୂଳେ ମାଧବୀ ଜୋଛନା ଝୁରି,
ଅଶ୍ରୁ ସାଗର ଅନ୍ଧାରେ ଉଠେ ଫୁଲି;
ମଳୟର ମୋହ ନିମେଷକେ ହେଲା ଦୂର
ମରଇ କାହିଁକି ବିଜନ କାସାରେ ଫୁଲ ?

୮— ଦେଖିଛ କି ସତେ ରକ୍ତ ମୋ ହାସତଳେ,
ସମର କାହାଣୀ ଅଗଣନ କ୍ଷତ ଜଳେ ?
ସଂଗ୍ରାମଲାଗି ସୈନିକ ବେଶେ ଉଭା ?
ଦର୍ପେ ଦମ୍ଭେ ହସଇ ତରୁଣ-ଯୁବା ?
ଚେତାଉଛ ମୋତେ ? ତହିଁ ଅବା କେଉଁ ଫଳ ?
ଜାଣେ ସମ୍ବଳ ଏ ମୋର ଅଶ୍ରୁଜଳ !
ସମର ଅନ୍ତେ ପୁଣ୍ୟ ଏ ମୋର କ୍ଷତ
ବହିଯିବ ତାକୁ ଲକ୍ଷ ତାରକାବତ !

ତେଣୁ ଗୋ ଶୂନ୍ୟ ଗୌରବ ଅବକାଶେ
ଭରଇ ନୀରବେ ତୀବ୍ର ମୋ ଉପହାସେ ।
ଶାନ୍ତ ସିନ୍ଧୁ ଶୂନ୍ୟକୁ ରହେ ଚାହିଁ,
ଜୀବନର କିବା ହାନି ଲାଭ ପୁଛେନାହିଁ,
ଦୁଃସହ ଭାର ବହିବା ଧରମ ଜାଣେ,
ଅଧରେ କରୁଣ ହାସ୍ୟ, ଶୋଣିତ ପ୍ରାଣେ !

× × ×

୯— ହେ ପଥିକ ଯେବେ ତୁମ ତୁଲେ ହେବ ଦେଖା,
କହିବ ସେ ସେ ମୋ ମର୍ମେ ରୁଧିରେ ଲେଖା ?
ଭୁଲିବ କେସନେ ମରଣ ମୂହୁର୍ତ୍ତ ଅବା;
ଜଗତେ ପଛକେ ବସୁ ଅପବାଦ ସଭା !
ପ୍ରୀତି-ଅପବାଦ-ଅଶ୍ରୁ ପରମ ଲାଭ,
ଅକୂଳ ସିନ୍ଧୁ ବକ୍ଷେ ଏକଇ ନାବ,

ଥିଲେ ଯେତେଦୂରେ ପ୍ରୀତି-ସୁଧାଲାଗି ପିନା—
ରହନ୍ତୁ ଜୀବନ ? ସ୍ମୃତିର ସୃଷ୍ଟି ବୀଣା ?
ସକଳ ଅବଳ ଉର୍ଦ୍ଧ୍ୱେ କମଳ ଫଟେ,
ସ୍ୱରଣେ ବନ୍ଦୀ ପରାଣ ଧ୍ୱାନ୍ତ ଟୁଟେ ।
ଗଗନର ତାରା ଦୂରେ ! ଦୂରେ । କବା ହାନି ?
ସକଳ-ଦୂରତା ଦଳେ ଅନ୍ତର ବାଣୀ !
ସୁଦୂରର ଯାହା ସଫଳ ନିକଟେ ଆସି,
କି ଫଳ ଭସ୍ମ ବାସନାକୁ ପରକାଶି ?

[ ୧୯୩୩ ]



## * ବୈଧବ୍ୟ

୧— କହ ନାହିଁ ତାକୁ ଦୈବର ଅଭିଶାପ,
ସ୍ୱର ଜୀବନର ଶତ ଦୁଷ୍କୃତ ପାପ,
ଶ୍ରାବଣ ସରିତ ସମାନ ବହୁ ଗୋ ଲୁହ,
ଚିର ଅବିଚଳ ଶଙ୍କିତା ଆଜ ନୁହ,
ଯେ ଅନଳ ଜଳେ, ଲେଲିହାନ ସେ ଯେ ଚିତା !
ସୃଷ୍ଟିର ସେ ଯେ ମଙ୍ଗଳମୟ ପିତା,
ଭସ୍ମ କରଇ ସକଳ କରଇ ଦଗ୍ଧ,
ସବୁ ନଶ୍ୱର ସକଳ ଏ ମାୟାଲବ୍ଧ !
ପ୍ରଣମ ପ୍ରୟରେ ବନ୍ଦନା ଯାଅ ଗାଇ
ଚିର ଶଙ୍କିତା ସଙ୍କୋଚ କାହା ପାଇଁ ?

* ଜନୈକା ଭଗିନୀର ବୈଧବ୍ୟୋପଲକ୍ଷେ ।

ଭସ୍ମ ସକଳ ଭସ୍ମ ! ଅନଳ ହସେ,
ଜୀବନେ ନିତ୍ୟ ଅକ୍ଷର ଯାହା କଷେ,
ଅବଚଳ ଅଟେ ଗୋ ନିଅ ଭସ୍ମର ଦୀକ୍ଷା
ଜୀବନ ଦୁଆରେ ପୂର୍ଣ୍ଣ ଆଜି ମୋ ଭିକ୍ଷା !

୨—ବାଷ୍ପ-ତମିର ଅବସାଦ ଛାୟା ଦଳି,
ହୃଦୟ ଅତଳେ ସବିତା ଉଠିଲେ ଜଳି !
ଚିର ସୁନ୍ଦର ଅନ୍ତରେ ବିଭାବସୁ
ସେ ଆଲୋକ ତେଜେ ନିରେଖିଯାଏ ଗୋ ମରୁ !
ତେଜ ଆଜି ମୋର ମର୍ତ୍ତ ଭୂଷଣ ମାୟା,
ଉଜ୍ଜ୍ୱଳ ତେଜେ ମରଇ ଜୀବନ ଛାୟା,
ଭସ୍ମ ସକଳ ବିକାର ଶୂନ୍ୟ ବନ୍ଧ !
ସକଳ ଶାନ୍ତ ସ୍ଫୁରେ ପବନ ଛନ୍ଦ !
ଭିକ୍ଷୁଣୀ ଆସ, ଆସ ଗୋ ଶୂନ୍ୟ ହସ୍ତେ,
ଡାକଇ ଆଲୋକ ଜୀବନ ମୁକ୍ତି-ପଥେ !
ଦୀର୍ଘ ସେ ପଥ ? ଆସ ସଂଶୟ ତେଜି,
ଚିର ମଙ୍ଗଳ ଦୈବ ବିଧାନ ହେଜି,
ଆସ ଗୋ ଶାନ୍ତ ସୁନ୍ଦର ଯାଏ ବେଳ,
ସ୍ମର ସେ ଅନଳ ! ଅଶୋଭନ ଆଜ ଖେଳ !

୩—ନିଭ ଆସେ ଚିତା ! ଦିବ୍ୟ ସବିତା ଉଠେ !
ନବୀନ ସୃଷ୍ଟି କମଳ ଅବା କି ଫୁଟେ !

ଚୌଦିଗେ ଧୀରେ ସ୍ଫୁରଇ ସୃଷ୍ଟି ଗୀତ,
ଜୀବନ ଅନ୍ତସେ ମୃତ୍ୟୁ ସଙ୍କେତ !
ଜାଣିଛୁ ଭଗିନି ରୁଦ୍ଧ କଣ୍ଠ ତବ,
ନ ଗାଇବ ତହିଁ ସଙ୍ଗୀତ ଅଭିନବ,
ଜୀବନ ଯେସନେ ଶୁଷ୍କ ବାସର-ଫୁଲ,
ନ ଥାଏ ସବାଗ ନାହିଁ ତଳେ ତାର ମୂଳ !
ମାତର ବିଷାଦ ଦଗ୍ଧ କର ଏ ପ୍ରାଣ
ଜୀବନ ପ୍ରଶ୍ନ ହୁଅଇ କି ସମାଧାନ ?
ଅଶ୍ରୁରେ ନାହିଁ ନାହିଁ ଗୋ ହର୍ଷେ ଶାନ୍ତି
ଆଲୋକେ ତମିରେ ଛୁଟେ ନାହିଁ କାହିଁ ଭ୍ରାନ୍ତି ।
ସ୍ୱାର୍ଥ ଦହନ ଅଭିମାନ ଅଜ ଜିଣି
ଜୀବନର ପଥେ ଅସଂ ଗୋ ସନ୍ୟାସିନି ।

୪—ଜୀବନର ପଥେ ଫୁଟେ କେତେ ଜାତି ଫୁଲ,
ହସଇ ଜ୍ୟୋତ୍ସ୍ନା କାହିଁ ତାର ସମତୁଲ,
ଆସଇ ରଜନି ଆସେ ଆଲୋକର ଦୂତ,
ପ୍ରଣୟ ସହିତେ ଲାଗେ ବଡ଼ ଅଦଭୁତ—
ହସଇ ମୃତ୍ୟୁ, ନିରେଖି କୁସୁମ ବୃଷ୍ଟି;
ଏ ସକଳ ମେଳେ ବିକଶେ କାହାର ସୃଷ୍ଟି ?
କାହାର ବିଧାନ ମଙ୍ଗଳମୟ ବିଧି ?
କାହା ଇଙ୍ଗିତେ ସକଳ ଲଭଇ ସିଦ୍ଧି ?
ଆଲୋକ ତମିରେ ଏକାକାର ସାମ-ଗାନ
ମୃତ୍ୟୁ ଜୀବନେ ଅବିନଶ୍ୱର ପ୍ରାଣ !

ମଳିନ ସ୍ୱାର୍ଥ ଲଭେ ନାହି ତହିଁ ସ୍ଥାନ,
ବ୍ୟର୍ଥ ଅଶ୍ରୁ ଅବସାଦ ଅଭିମାନ,
ବହିନିଅ ତାର ପୁଣ୍ୟ ବିଧାନ ଶିରେ,
ସ୍ମର ସେ ଅନଳ ! ନିଭିଅସେ ଶିଖା ଧୀରେ !'

୫— ଏ ଜୀବନ ପଥେ ଗଲେଣି ତୋ ଯେତେ ଚଳି,
ଜନନୀ ବସୁଧା ଶୁଣି ନାହିଁ କାର ଅଳି,
ଅକାଳେ କୁସୁମ ମଉଳି ପଡ଼ୁଛି ଝରି,
ତରୁଣର ଗୀତ କଣ୍ଠେ ଯାଉଛି ମରି,
ନିଭିଯାଏ ରୂପ ଯୌବନ ଢଳ ମରୁ
ଝାଉଁଳେ ପୀରତି-ଲତିକାଶ୍ରୟ-ତରୁ;
ସକଳ ମାନବ ବନ ଅଜଗର ପ୍ରାୟେ
ବରଇ ନୀରବେ ଶୂନ୍ୟକୁ ଚାହିଁ ଗାଏ ?
"ପରାଣ ନିଃସ୍ୱ ଜୀବନଦେବତା ସ୍ୱାମୀ
ଚିର ନଟବର ସକଳ ଅନ୍ତର୍ଯାମୀ,
ଶୂନ୍ୟ ସରବ ଅସ୍ତ୍ର ମୋର ଯେ ଶଶୀ,
ଶୂନ୍ୟ ପୁଲିନେ ଭରସା ଯେ ତୋର ବଂଶୀ,
ବହିଲୁ ଚେତନା ନିଃସ୍ୱ କର ଏ ପ୍ରାଣ,
ନାହିଁ ମୋ ଶୋଚନା—ସ୍ଫୁରୁଛି ତୋ ପୀରତି ଗାନ !"

୬—ବହିଯାଏ କାଳ ଦିବସ ଦଣ୍ଡ ନିତା
ସନ୍ନ୍ୟାସିନି ଗୋ ସ୍ମର ସେଅନଳ ଶିଖା !

ଲୋଡକ ଅଶ୍ରୁ କାହିଁ ତାର ଅବକାଶ ?
ପରବାସି ଅଟେ ମିଳାଇଯାଏ ସେ ହାସ !
ମୂକତର ଗୀତ ଶୁଣି ଶୁଣି ଅସେ ଦୂରୁ
ଶୁଭ୍ର ଅଙ୍ଗି ଅସ ଅକାର ପୂରୁ !

ସୌମ୍ୟ ମୂରତ ତବ ଶୈତର ବେଶ,
ସନ୍ଧ୍ୟା ସମାନ ଶାନ୍ତ ରୁକ୍ଷ କେଶ,
ଦିବ୍ୟ ଦୃଷ୍ଟି ସ୍ଖଳିତ ନୁହେ ସେ ପାଦ !
ମରମେ ଅଶ୍ରୁ ଅନ୍ତର ଅବସାଦ !
ପୁଣ୍ୟର ବନ୍ଧୁ ! ଦେଖି ବିଜୟିନୀ ରୂପ,
ସଙ୍କୁଚିତ ଟେ ସ୍ୱାର୍ଥ ବେଦନା ସ୍ତୂପ
ମାନବର ତେଜେ ମରଇ ମୃତ୍ୟୁ ଡରେ
ଧନ୍ୟ ଏ ଭୂମି ପୁଣ୍ୟ ଚରଣ ତଳେ ।



## * କରମର୍ଦନ

କାଳ ବୈଶାଖ !· ତପ୍ତ ତଟିନୀ ବାଲି ।
ଦଗ୍ଧ ପଥର ବୃଦ୍ଧ ନ ପାରେ ଚାଲି,
ଶୁଷ୍କ କଣ୍ଠ, ତୃଷା ଉଳୁଟ ତାର,
ଜଳ ଅଟଣ ବ୍ରହ୍ମ ପ୍ରାଣ କରେ ହାହାକାର !
ନସ୍ତ ଭୁବନେ କାହିଁ କେହି ନାହିଁ ଦିଶେ,
ମୃଗ ତୃଷ୍ଣିକା ଜଳବେଣୀ ନୁହେଁ କ ସେ ?

---

କଲଟର କଚେରୀରେ ମାମଲା ଲଢିବା ଆଶାରେ ଆସୁଥିବା ଜନୈକ ବୃଦ୍ଧ କାଠଯୋଡ଼ୀ ବାଲିରେ ଗ୍ରୀଷ୍ମ ତାପ ସହି ନ ପାରି ପ୍ରାଣ ହରାଇଥିବା ଘଟଣାକୁ ଲକ୍ଷ୍ୟକରି ।

ଝଙ୍କିଲ ସେହୁ ଶୂନ୍ୟ ସିକତା ପଥେ,
ଚାଲନ୍ତି ବୃଦ୍ଧ ଅଣା ତା ଅଗ୍ରଗତେ ।
ଦୁର୍ବଳ ଶିର ଖଟରେ କରେ ଝାଇଁ ଝାଇଁ
ଘନ ଅନ୍ଧାରେ ଚକ୍ଷୁକୁ ଦଶେ ନାଇଁ,
ଅଗତ ମୃତ୍ୟୁ ଓଗାଳଇ ପଥେ ହସି—
"ବୃଦ୍ଧ ବନ୍ଧୁ ! କାହିଁ ଚାଲଅଛ ଧସି ?"
ବଙ୍କି ଦୃଷ୍ଟି ବୃଦ୍ଧ ଚକିତେ ଥୟ !
"ନ ପାରେଁ ଚିହ୍ନି ! ଦେବ କି ହେ ପରିଚୟ ?
ବନ୍ଧୁ ? ବନ୍ଧୁ ! ଶୁଣିଛି କଣ୍ଠସ୍ୱର,
ଦୁର୍ବଳ ସ୍ମୃତି ଚେତାଉଛି ନୁହଁ ପର !"
"ମୃତ୍ୟୁ ମୁଁ ଚିର ଯୌବନ ରହେ ଜାଗି,
ତୁମ ପାଶେ ଆଜ ଆସିଛି ଯୁଦ୍ଧ ମାଗି !
ବିଜୟର ମୋହ ମାଦକତା କରେ କ୍ଷୁବ୍ଧ
ପ୍ରସ୍ତୁତ ହୁଅ ବୃଦ୍ଧ, ଦିଅ ହେ ଯୁଦ୍ଧ !"
"ବନ୍ଧୁ, ହେ ଚିରଯୌବନ ! ମୁଁ ଯେ ବୃଦ୍ଧ,
ସ୍ଖଳିତ ଅଙ୍ଗେ ସମ୍ଭବ କାହିଁ ଯୁଦ୍ଧ ?
ପୁଣି ନାହିଁ ସ୍ପୃହା ! ଗୌରବ ମୋହ ଖର୍ବ !
ସପ୍ତସାଗର ଲଙ୍ଘିବା ତୁମ୍ଭ ଗର୍ବ !
ଦିଅ ଦିଅ କର, ଯାଉଛ କାହିଁକି ଖସି ?
କରମର୍ଦ୍ଦନ କରିବ ବୃଦ୍ଧ ହସି !"
"ସ୍ୱେଚ୍ଛାରେ ଯେଉଁ ବଶ୍ୟତା ସ୍ୱୀକାର,
ଯୁଦ୍ଧେ ବନ୍ଧୁ ପ୍ରୟୋଜନ କିବା ତାର ?
ବଢ଼ାଅ ସେ କର, କରମର୍ଦ୍ଦନ ଲାଗି,
ହସ ମୋର ତୁଲେ, କି ହେବ ଯୁଦ୍ଧ ମାଗି ?

"ଯୁଦ୍ଧେ ରମିଛୁ ସକଳ ଜୀବନବ୍ୟାପୀ,
ନାଭିନାହିଁ କ୍ଷତ ଚିହ୍ନ ଯେ ଅଦ୍ୟାପି,
ହାସ୍ୟ ଉପୁଜେ ? ମାନୁ ନାହିଁ ତୁମ ମନ ?
ନାହିଁ ନାହିଁ ଅଜ ସଂଗ୍ରାମେ ପ୍ରୟୋଜନ !"

"ମିଥ୍ୟା ଏ ଭାଷ ! ଶରୀର ବହୁଛ ବନ୍ଧୁ !
ଗୃହି ଥିବେ ପଥ ପୁତ୍ର-ପୁତ୍ରବଧୂ,
ବୃଦ୍ଧା ପତ୍ନୀ ବନ୍ଧୁ ସୋଦର କନ୍ୟା,
ତୁମର ସେବାରେ ହେବେ ଯେ ସକଳେ ଧନ୍ୟା,
କହିବେ ବୃଦ୍ଧ ଯାଇଛୁ ମାମଲ ଜିତ,
ଦୂର ପରବାସୁ ଫେରିଲେ ଲଭିବେ ପ୍ରୀତି !"

ଭାଷଇ ବୃଦ୍ଧ "ବାକ୍ୟର ଅବକାଶ,
ନାହିଁ ଯେ ବନ୍ଧୁ ! ପ୍ରତିଦାନ ମୋର ହାସ !
ହାସ୍ୟ ଅଶ୍ରୁ ପଳିତ ପକ୍ୱ ପ୍ରାସ,
ପତ୍ନୀ-ପୁତ୍ର ଦୂର ଏ ଯେ ପରବାସ,
ବନ୍ଧୁ ! ସକଳେ ଜଣାଇବ ମୋର ହାସ !"

ମୁଦିଲ ନୟନ ବୃଦ୍ଧ ସିକତା ଶେଯେ,
ତ୍ରସ୍ତ ପଥିକ ବନ୍ଧୁକୁ କହେ "ଏ ଯେ,
ତୀକ୍ଷ୍ଣ ସୌରରଶ୍ମି ନ ପାରି ସହି,
ବହୁଛି ରୁଧିର ବୃଦ୍ଧ ତେଜିଲ ମହୀ !"



# ରମ୍ୟାରଲାଁ

[ ବିଂଶ ଶତାବ୍ଦୀର ଫରାସୀ ଦାର୍ଶନିକ,
ମନୀଷୀ ଓ ଶ୍ରେଷ୍ଠ ଲେଖକ ]

୧— ଜୀବନ ତିମିର ପଥେ ଧ୍ରୁବ ତାରାସମ,
ଉତ୍ଥିତ ସଭ୍ୟତା ଇଙ୍ଗିତ ଅମୃତ ପରମ,
ପରମ ପ୍ରତିଶ୍ରଧା ଅବା ତାତ୍ତ୍ୱଛ ଅଶେଷ,
ସୃଷ୍ଟି ହିତେ ତୁମେ ରୁଦ୍ର ଚିତ୍ତଅଛ ବସ !

ଅକ୍ଳାନ୍ତ ସୈନିକ ଭେଦ ଅନ୍ଧକାର ବ୍ୟୂହ,
ଅଗ୍ରସର ନିର୍ବିକାରେ ! ତୁଙ୍ଗ ମହୀରୁହ !
ଦୀର୍ଘପଥ ଅତିକ୍ରମି କ୍ଳାନ୍ତି ନାହିଁ ଜାଣ,
ଚିର ଅଗ୍ରଗତି ଦୀକ୍ଷା ଜାଣେ ସେହି ପ୍ରାଣ !

କେବଳ ଚାଲିବା ପଥ ! ଚାଲିବାରେ ମୁକ୍ତି !
ପାଥେୟ ସଙ୍ଗତେ ଶତ ଅତୀତର ସ୍ମୃତି !
ନାହିଁ ଅଶ୍ରୁ, ନାହିଁ ଖେଦ, ନାହିଁ ଅବସାଦ,
ଅନନ୍ତ ହାସ୍ୟ ପ୍ରୀତିର ଉକ୍ତି ପରମାଦ—

ସବୁ ଏଡ଼ି ସତ୍ୟ ଏକା ହେବା ଅଗ୍ରଗତି !
ଯେନ ନିଃସ୍ୱ ପଥିକର ଅନ୍ତର ପ୍ରଣତି !

୨— ହେ ନିର୍ଗୁଣ-ପରିବ୍ରାଜକ ବିଶ୍ୱ ତପୋବନେ !
ସଦା ଧ୍ୟାନରତ ତପଃକ୍ଳିଷ୍ଟ ସେ ଆନନେ,—

ଅଙ୍କିତ କାଳର ରେଖା ! ଅନ୍ତର ବିଚ୍ଛିନ୍ନ,
ଶୋଣିତ ଅପ୍ଳୁତ ! ନଭନାହିଁ କ୍ଷତ ଚିହ୍ନ
ସଂଗ୍ରାମର, ବିସ୍ମୃତ ବା ଅତୀତର ଗ୍ରାସ !
ଲଗିଛି ମଳିନ ଓଷ୍ଠେ ବିଜୟୀର ହାସ !
ଅତୁଳ ମାଧୁର୍ଯ୍ୟେ ମୃତ୍ୟୁ ରହେ ଅବା ହସି
ମୁଖେ ଅମରତ୍ୱ ବିଭା ଉଠଇ ଚହଟି !
ମୃତ୍ୟୁ ନାହିଁ, ମୃତ୍ୟୁ ନାହିଁ, ଅନ୍ଧକାର ଭେଦ,
ଅମୃତ ପରଶି-ସ୍ଫୂର୍ତ୍ତି ନିତ୍ୟ ଚଳେ ଖେଦ,
ପୁଣି ଜନ୍ମ ପୁଣି ମୃତ୍ୟୁ ଯାହା ନୁହେଁ ଶେଷ,
ବିକଶିତ ଲୀଳାପଦ୍ମ ସୁମଧୁର କ୍ଲେଶ ।
ଆନତ ସେ ଦୀର୍ଘ ବପୁ ନୁହେଁ ଭାଙ୍ଗିବାର,
ଘେନ ଦୀନ ଆନନ୍ଦାଶ୍ରୁ ପ୍ରୀତି ନମସ୍କାର ।



## ପ୍ରଥମ ଆସାର

ପ୍ରଥମ ଅସାର ଦୁର୍ଦ୍ଦିନ ଘନରାତ,
ତନ୍ଦ୍ରାନନ୍ଦେ ପୁଲକ ଉଠଇ ଗାତ,
ଗରଜି ବଜ୍ର କରଇ ଅଟ୍ଟହାସ,
ସ୍ନିଗ୍ଧ ତିମିରେ ପରବାସେ ମରେ ତ୍ରାସ ।
ଚମକେ ବିଜୁଳି ଘନ ଅନ୍ଧାରେ ପଶି,
ମିଳନ ତଲ୍ଲେ ଥିରତ ନ ଦିଏ ଧରି,
ଉଜ୍ଜ୍ୱଳ ହାସେ ଗଗନେ ଦିବ୍ୟକାନ୍ତି,
ଝଟକଇ ଅବା ସାଧକ ପରମ ଶାନ୍ତି ।

ମନ୍ଦିରେ ତୋର ଜଳେ ନାହିଁ ଆଜ ଦୀପ,
ଝରି ପଡ଼ୁଛି ତୋ ପୀରତି ପାଦପୁଁ ନୀପ,
ମଧୁର ମାତର ଏ ରଜନୀ ଅଭିସାର,
ମଧୁର ଆଜ ତୋ ଅନ୍ତର ହାହାକାର ।

ଶୂନ୍ୟତା ବାଧେ ? ଭର ତୋ ବ୍ୟଙ୍ଗ ହାସେ,
ବଜ୍ର ଯେସନେ ଗର୍ଜେ ତମିସ୍ରାକାଶେ,
ଶୀତଳ ପବନ, ଶୀତଳ ଦହନ ଆଜ,
ଦୂର ଗଗନର ନିଶ୍ୱାସ ତୋର ।
ମରମେ ଉଠଇ ବାଜ !

ନୀରବେ ଫେରଇ ନୀରବ ନୟନ ଗୀତ
ଶୂନ୍ୟତା ଭରେ ଦୂର ମୂର୍ତ୍ତିର ପ୍ରୀତ,
କି ଭାବନା ତୋର, ହେ ପଥିକ ପରବାସୀ ?
କଢ଼ାଏ ତୋ ପଥ ସୁଦୂରର କାଶହସୀ ।

ଦୁର୍ବହ ଭାର ପଛେ ତୋର ରହି ଅସ,
ଅମୂଲ୍ୟ ତୋର ପାଥେୟ ବ୍ୟଙ୍ଗହାସ,
ସବୁ ସଙ୍କୋଚ ଜୀବନ ଦୈନ୍ୟ ମସୀ,
ବଜ୍ର ସମ୍ପଦେ ଉଠୁ ରେ ଉଠେ ହସି ।
ବ୍ୟଙ୍ଗ ହାସ୍ୟେ ଉଚ୍ଛୁଳ ଉଠୁ ସେ ହିଅ,
ହସି ଉଠୁ ଆଦ ନିଃସ୍ୱ ବରଷା ପ୍ରିୟା,
ଆଜ ଅନ୍ଧାରେ ପୂରୁ ପରାଣର ପ୍ରୀତ,
ବନ୍ଧନ ଭୁଲି ସ୍ଫୁରୁ ନବୀ କଣ୍ଠ-ଗୀତ ।



## ପ୍ରଭାତୀ

ଦୁର୍ଦ୍ଦିନ ତମ ହାଣି    ଫୁଟିଉଠେ ତାର ବାଣୀ
ଜାଗ୍ରତ, ଜାଗ୍ରତ ପାନ୍ଥ,
ସୁପ୍ତି ତୋ ନାହିଁ ସାଜେ  ବନ୍ଧନ ମୋହ ଭାଜେ
ମରଇ ଅଲେକେ ଚାହିଁ ଧ୍ୱାନ୍ତ ।
ଅସରଳ ସବଳ ତୋ ସରଳ,
ଅମୃତ ହେବ ଅଜ ଗରଳ,
ଅନ୍ଧାର ଭେଦ ଚାଲ ଅଚଳ !
ଅଧ୍ୱାନ ଅଶେଷ ଅବିଶ୍ରାନ୍ତ !
ଜାଗ୍ରତ, ଜାଗ୍ରତ ପାନ୍ଥ ।

ଅଶ୍ରୁ ସାଗର ପାରେ    ଶତ ବିଫଳତା ହାଣି
ଉଇଁଛୁରେ ଜୀବନର ସୂର୍ଯ୍ୟ !
କିବା ବନ୍ଧନ ଭୀତ ?    ଗାଅରେ ବିଜୟ ଗୀତ
ମନ୍ଦ୍ରେ ଡାକଇ ତାର ତୂର୍ଯ୍ୟ;
ତୋଳି ଧର ଉଠେ ତା ଧ୍ୱଜାରେ,
ତା ବିଜୟ ଦୁନ୍ଦୁଭି ବଜାରେ,'
କମ୍ପିବ ମରଣର "ମଜାରେ
ପଥ ତୋର ଚାହିଁ ବସେ କାନ୍ତ !
ଜାଗ୍ରତ, ଜାଗ୍ରତ, ପାନ୍ଥ ।

ଖସିପଡ଼ୁ ଅନ୍ତରୁ ତୁଚ୍ଛ ଜଡ଼ତା ଭୀତ
ସନ୍ଦେହ ସକଳ କ୍ଲୀବତ୍ୱ,
ମିଥ୍ୟାର ମୋହ ଭେଦ—ମଙ୍ଗଳ ଆଶ୍ୱାସ

ଜୀବନେ ହେଉରେ ଅକ୍ତ ସତ୍ୟ ।
ଜଳଉ ତା ହୋମାନଳ ପୂଣ୍ୟ
ସକଳ ଅଶିବ ସବୁ ଘୃଣ୍ୟ,
ଭସ୍ମ କରେଖ ତହିଁ ସ୍ଫୂର୍ତ୍ତି,
ପ୍ରଣମି ଚଲ ତୁ ପଥେ ଭ୍ରାନ୍ତ;
ଜାଗ୍ରତ, ଜାଗ୍ରତ, ପାନ୍ଥ ।



## ଗ୍ରାମ୍ୟ-ପ୍ରଣୟ

କହିଲ ତନ୍ୱୀ "ଛି ଛି ଲଗୁନାହିଁ ଲାଜ ?
କି କହିବେ ଲୋକେ ? ଦିନଗୋଠା ଗଲ ଅଜ,
ପଥେ ଘାଟେ କେହି ଦେଖିନାହିଁ ତୁମ ଘର,
ଫଟା କପାଳକୁ କି ନିଶାରେ ହେଲ ବାଇ ।
"ବୋହୂ ଝିଅ ମୋତେ ଦେବେ ନାହିଁ କାଲି ବାସ,
ସହି କୁହେଁ ତଳେ ସେ ଠାପର ପରିହାସ ।
ଗାଆଁ ପଧାନେ ଯେ ଗଲେ ଏଇ ପଥେ ଡାକି,
କଳାକବାଟିରେ ଦିଶିଗଲ ନାଲି ଅଖି ।
"ଚରିଟି ଗୁହିଁଲେ ଗଲନାହିଁ ତାଙ୍କ ପାଖେ,
ବାକୀ ମୂଲଗଣ୍ଡା ନ ଧାଇଁଲେ କାହୁଁ ଅସେ ?
ସଞ୍ଜଲଗି ଅସେ ପୋଡ଼ଯାଏ ମୋର ମୁହିଁ,
କାମଦାମ ଛାଡ଼ ନ ବସିବ ଦେହ ଛୁଁଅ !"
କହି ପ୍ରିୟା ଖେଳଖଞ୍ଜନ ଅଖି ଥିର,
ନବ ଅନୁରାଗେ ପୁଣି ଛଳଛଳ ନୀର,

ଝାଁପଇ ତରୁଣ ବାଳାସ୍ତୁ ତାର ଦେହ,
ଅତଳ ସାଗରୁ ସୁଗଭୀର ତାର ସ୍ନେହ ।

"କୁଟିର ଅଲୋକ ଶୂନ୍ୟ ହୃଦୟ ରାଣୀ
କାହିଁକି ବସିଛୁ କେସତନ ପାଉରୁ ଜାଣି ?
ପିଅଇଛୁ କେତେ କୋମଳ ଅଧର ସୁଧା,
ବକ୍ଷେ ଅସନ ଦେଇଛୁ, ତେବେ ତ କ୍ଷୁଧା—
ନିଭିନାହିଁ ତଳେ ପିପାସା ପରାଣ ରାଣି,
ଯେତେ ଗୋ ପିଇଲେ ଛଣା ସୁଧା ସେଇ ବାଣୀ,
କେଉଁ ରାଇଜର କବାଟୁ ନ ପାରେଁ ବୁଝି
ଗୁହିଁ ତୋର ଅଖି ଅଟସେ ମୋ ନୟନ ମୁଦି ।

"ପରାଣ ବନ୍ଧୁ ଦୁଃଖୀ ହୃଦୟରାଜ !
ଅଭାଗିନୀ ମୁହିଁ, ଦଅ ନାହିଁ ଅଉ ଲାଜ ।
କବା ମୋର ରୂପ ? ସଂସାର ରୂପଖଣି !
ଅକାଶର ତାରା ପାଇବ କି ତୁମେ ଗଣି ?"
"ରୂପେ ଗୁଣେ ତୁମ ପାଦକୁ ନୋହେ ମୁଁ ସର,
ତୁମେ କାୟା, ମୁଁ ଗୋ ତୁମର ଯେ ଛାୟାପର,
ତୁମର ଗୁଣେ ମୁଁ ବାସିବି ଜଗତେ ସିନା,
ତୁମେ ମୋର ପ୍ରଭୁ ତୁମ ପଦେ ମୁଁ ଗୋ କଣା ।
ସହିପାରେଁ ନା ମୁଁ ତୁମ ପଞ୍ଜରୁ ହାନି
ବୁଲଅସ ଢେରେ ଛାଡ଼ ମୋ ପଣତକାନି !"
"ଛାଡ଼ ତୋତେ ଏକା ଅଜରେ ପରାଣ ସହି,
କାହିଁ ଯିବାକୁ ତ ମନ ତଳେ ବଳୁ ନାହିଁ ।
ନୟନେ ଘୋଡ଼ାଇ ରଖିଛୁ କି ପରମାଦ,
ନ ଫେରେ ମୋ ଅଖି, ଚଳୁନାହିଁ ମୋର ପାଦ !"

‘ ଅସରନ୍ତ ସୁଧା ସାଗରକୁ ଖୋଲି ଗୁହଁ;
ଚେଲଉଠି ଅସିବା ଦେଖିନ୍ତୁ କାହାକୁ କାହିଁ ?
ପିଇବାକୁ ଗୋଟିଯାକ ଛନଛନ ମନ,
କେତେ କଥା ଭାବିଲେଁ, କହିପାରେ ନାହିଁ ଧନ !
ସକଳ ଭାବନା ଭୁଲେ ମୁଁ ତୋ ଦେହବାସେ
ସତ୍ରୁ ପଡ଼ିରୁଷ, ନିନ୍ଦା ନିଭେ ସେ ହାସେ !”
“ଧ ଧନର ମୋହ ପରମାଦ ମୋର ବନ୍ଧୁ
କି କରିବ ପୁଣି ସରିଗଲେ ଧନେ ମଧୁ ?
କାଲିପାଇଁ କିଛି ଥାଉ ! ବୁଲିଅସ ଯାଇଁ,
ଏତେବେଳେ ଗୋଠୁଁ ନ ଫେରିଲେ କାଅଁ ଗାଈ,
ଡହୁର ଯାଉଛି ସଞ୍ଜ, ଦେବି ମୁଁ ବତି ।
ଯିବି ମୁଁ ପାଣିକି ପୁଣି, ଛାଡ଼ ମୋର ହାତ ।”
“ଅଙ୍ଗୁଳି ବସି ଗଣୁଛି କି ହେବ ଅବା ?
ବହୁବେଳ ବସି ଶିଥିଳ ଯେ ମୋର ଗଭା;
ଛାଡ଼ ହାତୁ ହାତ, ପିନ୍ଧେ ଶିଥିଳ ବାସ,
ମରିବାକୁ ତଳେ ଦେବ ନାହିଁ ଅବକାଶ ?”
ଏତେ କହି ପ୍ରିୟା ଉଠିଯାଏ ତରତର,
ବିହ୍ୱଳ ଯୁବା ଧରି ଟାଣେ ତାର କର,
ବିନମ୍ର ସୋହାଗ କଣ୍ଠେ “ରହନା” କହେ
“ରହଗୋ ଦଣ୍ଡେ ମନ୍ଦ ମରୁତ ବହେ !”
“ତୋ ପରି ଚନ୍ଦ୍ର ଦୂରୁ ହସି ହସି ଅସେ,
ମଲ୍ଲୀ କେତକୀ ସମାନ ତୋ ଦେହ ବାସେ,
ଦୂରବଣୁ ଡାକେ କୋଇଲି ତୁହାଇ ତୋତେ,
ରହିଗଲେ ଅଉ, ଛାଡ଼ି ଯାଅ ନାହିଁ ମୋତେ ।

"ଦର୍ଦନର ମୋହ ଦଦନର ରୂପ ସ୍ମୃତି ?
ସାର୍ଥକ ମୋର ଜୀବନ ବହୁ ସେ ସ୍ମୃତି !
ତା ପରେଂ ବରଷା ଅଶେଷ କଷଣ ମୋର,
ପରବତ ଦେହେ କେତେ ଲଙ୍ଗଳ ଗାର !
ବଜ୍ରର ସ୍ୱରୁ ଗରଜନ ତମ ଘୋର,
ପଙ୍କେ ସଲିଳେ ମୁଣି ନାଡ ମଟିବାର !

"ସକଳ କଷଣ ହଜଲ ମୋ ଅନୁଭୂତ,
ସହଜ କରବ ଅଜାକାର ତୋର ସ୍ମୃତି ।
ବସ ପାଣେ ଅଙ୍କ ନିଷ୍ଠୁର ନୁହ ଅଭ,
ନିନ୍ଦା ଝାପର ଯେ କରବ କରୁଥାଉ ।
ଗହନ କାନନେ ଫୁଟିଥିଲୁ ଫୁଲ ଏକା
ବଧାତା କରୁଣା ଯୋଗେ ତୋହ ତୁଲେ ଦେଖା
ତୋଳନ୍ତୁ ଅଦରେ ରଖିବାର ଥାନ କାହିଁ ?
ରୂପ ତେଜେ ମରେ କୁଠୀର ଲଜ୍ଜା ପାଇ

ସବୁ ସମ୍ପଦ କସ୍ତୁରୀ ମୃଗସମ,
ସମ୍ପାଦ ଦୂରେ ଭରମିବା ଅଧରମ ।
ଖସିନ୍ତୁ ଅଳକ ନୟନ ସନ୍ନିଧାନେ !
କରବୀ ଫୁଲଟା ଖୋସିଦିଏଁ ରହ କାନେ ।

ମାୟା ମୃଗ ଅବା ଅସିଅଛୁ ହୋଇ ବଣା
ମର୍ତ୍ତ୍ୟ ସରଗ ପଡ଼ୁନାହିଁ ମୋତେ ଜଣା,
ଏଡ଼େ ଶୋଭା ତୋର କେଉଁ ଫୁଲୁଁ କଲୁ ଚୋର
ରହ ଅଭ ଥରେ ଦେଖି ନିଏ ଭଲ କର ?"

ଦୃପ୍ତେ ତରୁଣୀ ତରୁଣ ନୟନ ହସି !
ଶତଯୁଗ ବ୍ୟଥା ଦୁଃଖ ସ୍ୱପ୍ନ
ପରଶୁ ଯାଏ ବା ଖସି !



## ପ୍ରଣୟର ଆଦ୍ୟ ଅନୁନୟ

୧—କାହିଁ ପାଇଁ କୌତୁହଳ ? ନିରୁଦ୍‌ବେଗକର ବନ୍ଧୁ ମନ !
କି ଭାବ ହରିବ ମୋର ଯୁଗବ୍ୟାପୀ ସ୍ୱଚ୍ଛ ଅବରଣ ?
ବିନୟ ଚତୁରି ଭଙ୍ଗୀ ବ୍ରୀଡ଼ାନତ ମୋ ନୟନ ତଳେ,
ତୀବ୍ର ଅଭିଳାଷ ତବ ଦେଖିବାକୁ କି ଅଲୋକ ଜଳେ ?
ଗୋଲାପ ମାଧୁରି ଅବା ପଦ୍ମ ଗନ୍ଧେ ନୁହ ବନ୍ଧୁ ତୁଷ୍ଟ ?
ଛିନ୍ନ କରେ ବୃନ୍ତ ଦଳ ଯେହ୍ନେ ବୈଜ୍ଞାନିକ ଦୂରଦୃଷ୍ଟ
ଜ୍ଞାନର ପିପାସା ଲାଗି, ତା ମାଧୁର୍ଯ୍ୟ କରି ଛିନ୍ନ ଭିନ୍ନ
ସୁଖୀ ଦେଖି ରୂପ ତଳେ କି ଅଲୋକ ଜଳେ ନିଶି ଦିନ ?
ଶାନ୍ତ କୌତୁହଳ ତବ ? ନ କର ସେ ବିଫଳ ପ୍ରୟାସ !
ତୃପ୍ତି ବିନିମୟେ ବୃଥା କିଣି ନାହିଁ ଅଶେଷ ନୈରାଶ୍ୟ !
ଜୀବନର ନଗ୍ନ ରୂପେ ଏ ଧରାର ସୌନ୍ଦର୍ଯ୍ୟ ପିପାସୁ
ଅମରାବତୀରୁ ଅବା ବିଶ୍ୱ ସୃଷ୍ଟି ସୌନ୍ଦର୍ଯ୍ୟ ପ୍ରକାଶୁ,
ସ୍ୱେଚ୍ଛାର ସମ୍ପଦ ଶୋଭା ନାରୀ ଅଙ୍ଗ କରଛି ଭୂଷଣ,
ଛିନ୍ନ କର ନାହିଁ ତାକୁ ! ଘେନ ମୋର ଦୀନ ନିବେଦନ !

୨—ରହୁ ନାହିଁ ଧୃତ ସଖା ? ଘନ ଘନ ଝାଣୁଛ୍ଛି ଉଚ୍ଛ୍ୱସି—
ପ୍ରଚଳିତ ସମୀର ଯେସନେ ଯାଏ ଦୋଳି ବାସନ୍ତୀ ବଲ୍ଲରୀ !
କହିଁ ତୃପ୍ତ ଦେଖି ମୋର ନିମୀଳିତ ଚକ୍ଷୁ, ମନ୍ଦ ହାସ ?
ତରୁଣୀ ଅମ୍ବାର ଲେଉଡ଼ ବନ୍ଧୁ ତେଣୁ ମୋ ନଗ୍ନ ପ୍ରକାଶ ?
ଲଜ୍ଜ୍ୟାରେ ମୁ ଯାଏଁ ସରି ! ଦେଖି ତୁମେ ହେଉଛ ବିମର୍ଷ ?
ଅପ୍ରକାଶ ମୋ ଆନନ୍ଦ ତୃପ୍ତି ଲଭି ତବ ପୁଣ୍ୟ ସ୍ପର୍ଶ !!
ବିଲମ୍ବ ନ ସହେ ତଳେ ? ଧର ଧୈର୍ଯ୍ୟ ଶର ପ୍ରାଣଧନ,
ବ୍ୟର୍ଥକର ନାହିଁ ଶର ନିଃସ୍ୱ ପ୍ରାଣ ପୂଜା ଅୟୋଜନ !
ଅମୂଲ୍ୟ ପବିତ୍ର ସ୍ପର୍ଶ ! ଅଦୃଷ୍ଟ ମୋ ଦେବତା ସାନ୍ନିଧ
କି ଦେବ ତା ପ୍ରତିଦାନ ଭିଲ ଲଟଙ୍କ ମରେଁ ଶରଣ୍ଣିଗ୍ଧ !
ନଗଣ୍ୟ ମୋ ଦାନ ତୁଚ୍ଛ, ଅପୂର୍ଣ୍ଣ ମୋ ଏ ନୈବେଦ୍ୟ ଥାଳି,
ଅରାଧ୍ୟ ମନ୍ଦର ଦ୍ୱାରେ ତେଣୁ ଦେଲି ଯାଏ ମୋର ଭାଲି ।
ମନ୍ଦରେ ଦେବାକୁ ପାଦ ଥରେ ଦେହ ଶତଗୁଣ ବ୍ୟଥା,
ତୁଚ୍ଛ ରୂପ ବନ୍ଦ ବୃଥା ଲଜ୍ଜା ଦଅ ଅରାଧ୍ୟ ଦେବତା !

୩—ପ୍ରଣୟ ପ୍ରଥମ ସ୍ପର୍ଶେ ମଧୁର ଏ ନିଭୃତ ମିଳନେ,
ନ ପାରେଁ ସମଜ୍ଜ ବନ୍ଧୁ ତନୁ ଲତା କମ୍ପେ କ୍ଷଣେ କ୍ଷଣେ !
ସହସ୍ର ପ୍ରୟାସେ ଭୀରୁ ନେତ୍ର ଯୁଗ ନୁହେ ଉନ୍ମୀଳିତ,
ଅଦୃଷ୍ଟ ସାଗର ପାରୁ ଯେସନେ ଧୀରେ ଅମର ସଙ୍ଗୀତ
ଭାସି ଅସେ ସମୀରଣେ ! ଚତୁର୍ଦ୍ଦିଗ କୌମୁଦୀ ପ୍ଳାବିତ !
ବଂସିଛ ନା ତୁମେ ବନ୍ଧୁ ?—ଚରାଧ୍ୟ ପ୍ରଣୟ ବାଞ୍ଛିତ ?

ତୁମର ସନ୍ନିଧେ ଆଜ ଧନ୍ୟ କର ମୋ ହୃଦୟ ରାଜ,
ଚାହିଁବ କି ମୁଖ ଟେକ ? ତୀବ୍ର ଇଚ୍ଛା ! ମାନ ଲାଗେ ଲାଜ !
କାହିଁକି ଅସ୍ଥିର ତୁମେ ? ପଶୁରୁଛ ଦର୍ଶନ ବାସନା ?
ନାହିଁ, ନାହିଁ ! ନୟନ ମୋ ଦେଖାଇଛୁ ଜୀବନେ ଛଳନା !
ଦେବତାର ସ୍ପର୍ଶ ସମ ତୁମ ଅଙ୍ଗ ଗନ୍ଧ ଯାଏ ଛୁଇଁ,
ଯେସନେ ବାସନ୍ତୀ ସନ୍ଧ୍ୟା ଅନ୍ଧକାରେ ମୁକୁଳର ଭୁଇଁ;
କୁଣ୍ଠିତ ସୁନ୍ଦର ଆଜି ! ମର ପ୍ରାଣ ପ୍ରତୀତ ଅମର !
ଏ କୌମୁଦୀ-ସ୍ୱପ୍ନ-ଲୋକେ ବନ୍ଧୁ ମୋ ଜୀବନ ଦାନର୍ଭିର !

୪—ଏ ନଶ୍ୱର ଦେହ ପରେ ଗଢ଼ିଲେ ଯେ ଦେବତା ମନ୍ଦର,
କଳୁଷ କାଳିମା ପରେ ପୁଣ୍ୟ ପ୍ରଭା ଯେବା କଲେ ସ୍ଥିର,
ଭଲେ ଦେବ-ଯୋଗ୍ୟ,ଦୀନା ନାସ୍ତି ଜନମେ ଭକ୍ତ ପ୍ରୀତିଭରେ !
ସାଗର ମନ୍ଥନ୍ତୁ ଅବା ଅମୃତର ସନ୍ଧାନ ଅନ୍ତରେ !
ଦେବତାର ପ୍ରିୟ ତୁମେ, ବନ୍ଧୁ ମୋର ଦେବତାର ଦାନ,
ସେ ଅନ୍ତର ଶୁଭ୍ର ପୂତ ଅମୃତର ନିତ୍ୟ ଅଧିଷ୍ଠାନ !
ନାସିଛୁ ବାସନା-ମୋହ, କମ୍ପା ପୁଣି କ୍ଷଣ ଚପଳତା ?
ସ୍ଥିର ହୁଅ !(ଦେବତାର ଦାନେ କର ଅବନତ ମଥା !
ଆଜିର ଏ ପୁଣ୍ୟ ଲଗ୍ନ ଜୀବନରେ ହେଉ ଗୋ ଅମର,
କ୍ଷଣେ ସ୍ପର୍ଶ ଅନୁଭୂତ, ନୀରବ ଏ ନିଭୃତ ବାସର,
ଏ ପ୍ରଣୟ ପବିତ୍ରତା, ଧନ୍ୟ କରୁ ବ୍ୟାକୁଳ ଜୀବନ !)
ମାନବର ଭାଗ୍ୟ ଡୋର ଧରି ପଛେ ହସୁ ଗୋ ମରଣ ।
ଲଜ୍ଜା ଅବରଣ ମୋର ବନ୍ଧୁ ପୁଣ୍ୟ-ସୌନ୍ଦର୍ଯ୍ୟ-ସମ୍ବଳ,
ନିମ୍ନେ ତାର ପୁଞ୍ଜୀଭୂତ ସଂଗ୍ରାମର କଳୁଷ-ଗରଳ ।



# ବନ୍ୟା ବିପ୍ଳବ

୧—ବନ୍ୟା ବନ୍ୟା ଚତୁର୍ଦ୍ଦିଗେ ପ୍ରଳୟ ପ୍ଲାବନ !
ଲକ୍ଷ ଅର୍ତ୍ତକଣ୍ଠ ଡାକେ ରଖ ନାରାୟଣ !
ଅନାଥ ଶରଣ ପ୍ରଭୁ ଅଶ୍ରୁ ନିବେଦନ,
ବିକଳ ପ୍ରାର୍ଥନା ସତେ ହେବ ଅକାରଣ ?
ବିଫଳ କି ହେବ ଅସହାୟ ହାହାକାର,
ନ ଫିଟିବ ରୁଦ୍ଧ ତବ ମନ୍ଦିର ଦୁଆର ?
ମରଣ ପ୍ରଖର ସ୍ରୋତେ ଯିବେ ତେବେ ଭାସି—
ମୂକ ପଶୁ ସମ ଜନ ପ୍ରାଣୀ ରାଶି ରାଶି ?
ନୀରବେ ରହିବ ତୁହିଁ ମୂକ ଶିଳା ସମ ?
ନିଷ୍ଠୁର ଏ ନୀରବତା ତୁମର ଧରମ ?
ନ ଟଳିବ ତଳେ ତୁମ ନିଷ୍ଠୁର ବିଧାନ ?
ମଳିନ ସକଳ ଦମ୍ଭ ଜ୍ଞାନ ଅଭିମାନ ?
ସୃଜନ ପ୍ରଳୟ ତବ ନିତ୍ୟ ସମୋତ୍ସବେ
ନିର୍ବିକାରେ ତବ ଶଙ୍ଖ ନିର୍ଘୋଷେ ନୀରବେ !

୨—ଉଠେ ହସେ ଜଳ ସ୍ରୋତ ! ପ୍ରବଳ ଗର୍ଜନ !
ପ୍ରାଣ ଭିକ୍ଷା ଶୁଣି ବ୍ୟଙ୍ଗ କରଇ ମରଣ !
ଉପହାସ କରେ ବାତ୍ୟା, ଭାସିଯାଏ ତଣ୍ଟା,
ମରଣ ଗରବେ ଉଡୁ ଜୀର୍ଣ୍ଣ ପତ୍ର ପରି !

ନିଷ୍ଫଳ ବେଦନା ଅଶ୍ରୁ ଆତ୍ମସମର୍ପଣ,
ଆତ୍ମ ତ୍ୟାଗ ସେବା ନିଷ୍ଠା ଜଳ ନିମଗନ
ପାପ ପୁଣ୍ୟ ଗୁଣି ଦବା ସବୁ ଏକାକାର,
ଧର୍ମାଧର୍ମ ଭେଦ ବୁଦ୍ଧି ମାନସ ବିକାର,
ଲୁପ୍ତ କରି ବହି ଯାଏ କାଳ ବନ୍ୟା ସ୍ରୋତ,
ମାନବର ପ୍ରଜ୍ଞା ଯେହ୍ନେ ଅସହାୟ ପୋତ !
ସବୁ ମିଥ୍ୟା କରି ପ୍ରଭୁ ହୁଏ ପରତୀତ
ଅଲଙ୍ଘ୍ୟ ବିଧାନ ତବ ! ମଙ୍ଗଳ ସଙ୍ଗୀତ—
ମୃତ୍ୟୁ ଗର୍ଭୁଁ ରଣି ମାଗେ ପରାହତ ଜନ,
ତୁମ ଦୀପାଲୋକେ କର ତିମିର ହରଣ !

୩—ମରିବୁ ସକଳ ଜନ ମୂକ ପଶୁ ସମ ?
ଏ ସକଳ ହାହାକାର ଆତ୍ମନିବେଦନ—
ନିଷ୍ଫଳ ହେବ କି ସତେ ପରାଣ ଦେବତା ?
ନ ଫିଟିବ ରୁଦ୍ଧ ଦ୍ୱାର ? ନ ବାଜିବ ବ୍ୟଥା ?
ମରିବୁଁ ନୀରବେ ନିଶ୍ଚେ ମରିବୁଁ ମାତର,
ତୁମ୍ଭ ନାମ ନିଷ୍ଠୁରତା ଗାଇବୁଁ ନିକର,
ଉଚ୍ଚସ୍ୱରେ କମ୍ପାଇ ଏ ଅସୀମ ଗଗନ,
ତବ ନମସ୍କାର ପ୍ରଭୁ ବରିବୁଁ ମରଣ !
ଯାହାର ଇଚ୍ଛାରେ କୋଟି ଗ୍ରହ ଚନ୍ଦ୍ର ତାରା,
ଚରନ୍ତି ବିହାରି ଅବନତ ସୃଷ୍ଟି ସାରା,
ମୁଷ୍ଟିମେୟ ନିଃସ୍ୱଜନ କିବା ଅମେ ଛାର ?
ନୀରବେ ବିଧାନ ତବ କରିବୁଁ ସ୍ୱୀକାର ।

ନଅ ଅଶ୍ରୁ ବୃଷ୍ଟି ସୃଷ୍ଟ ପ୍ରଳୟ ଭରତା
ଜଳସ୍ରୋତେ ଭାସିଯିବୁଁ ନାହିଁ ଥିଲେ ବ୍ୟଥା ।

୪—ଦୁର୍ଭେଦ୍ୟ ଏ ମରଣର ଅନ୍ଧକାର ଭେଦ
କରେ ବହୁ ଆଶା ଦୀପ ଆସ କିଏ ଖେଦ ?
ନିଃସ୍ୱର ଜୀବନ ଦାତା ? ମାନବ ସେବକ ?
ଦେବତାର ଦୂତ ଅବା ? ରଖ ପ୍ରାଣୀ ରଖ !
ଲକ୍ଷ ମୂକ ଜନଙ୍କର ଉଡ଼ଇ ଜୀବନ,
ପାଞ୍ଚଦିନ ହେଲା ପିଣ୍ଡେ ପଡ଼ି ନାହିଁ ଅନ୍ନ !
ନୀରବେ ଗଲେଣି ଭାସି ମୂକ ପଶୁ ଯେତେ
କରୁଣ କଳନା କେହି ? ବାକି ଜଣି କେତେ—
ନୀରବେ ରହନ୍ତି ଶୁଣି କାଳର ଆହ୍ୱାନ,
ଦେବତାଙ୍କୁ ବଳି ତୁମେ, ରଖ ରଖ ପ୍ରାଣ !
ସାମାନ୍ୟ ମାନବ ନୁହ ତୁମେ ଦେବ ଦୂତ,
ତୁମ ରକ୍ତେ ନିର୍ଜୀବ ଏ ଧରା ନିତ୍ୟ ପୂତ !
ଅମୃତ ମଙ୍ଗଳମୟ ତୁମ ପାଦ ସ୍ପର୍ଶେ !
ମୃତ୍ୟୁ-ତଳେ ପ୍ରାଣ ପଦ୍ମ ବିକଶେ ହରଷେ ।

୫—ବନ୍ୟା ପ୍ରପୀଡ଼ିତ ପଞ୍ଚଶତ ନିଃସ୍ୱ ଦୀନ ଗ୍ରାମବାସୀ,
ସହାୟ ସମ୍ବଳ ହୀନ କ୍ଷୁଦ୍ର ପଲ୍ଲୀ ଯାଇଛି ଯେ ଭାସି—
ଗତ ରାତେ ! ଶୂନ୍ୟ ହସ୍ତେ ଛାଡ଼ି ସବୁ ଆସିଲେ ପଳାଇ
ପଥ ପାର୍ଶ୍ୱେ ! ବୃକ୍ଷତଳ ବିନା ତାଙ୍କୁ ଆଶା ଅନ୍ୟ ନାହିଁ !

ତା ପରେ ପ୍ରବଳ ବୃଷ୍ଟି, ଅବିରଳ ଧାର ପଡ଼େ ଝରି,
ଶୂନ୍ୟ ପିଣ୍ଡ, ବିବସନ ଦେହ, ମଜ୍ଜା ଅସ୍ଥି ଉଠେ ଥରି ।
ଲତା ଗୁଳ୍ମ ଅନ୍ତରାଳେ ଯୁବା ନାରୀ ରଖେ ତାର ମାନ
ତା କୋଳେ ବୁଭୁକ୍ଷୁ ଶିଶୁ ପାଶେ ବୃଦ୍ଧା କହେ ଗଲା ପ୍ରାଣ !
ମୂକ ପଶୁ ସମ ସର୍ବେ ଶୂନ୍ୟଠାକୁ ରହିଛନ୍ତି ଚାହିଁ,
କାନ୍ଦିବେ ଅଶ୍ରୁ ଲାଗି ? ନେତ୍ରେ ତାଙ୍କ ଜଳ ବିନ୍ଦୁ ନାହିଁ !
କାହା ମୁଖେ ନାହିଁ ଦିଶେ ଭୋଗୀ ଜନ କ୍ଷୀଣ ଆଶା ରେଖା,
ଗୋଷ୍ଠ ଗାଭୀ ସମ ମୂକ କରୁଛନ୍ତି ମରଣ ଅପେକ୍ଷା ।
ଗୃଧ୍ର ଦଳ ବୃକ୍ଷ ଶାଖେ କରୁଛନ୍ତି ଅବା ଉପହାସ,
ନର ଭାଗ୍ୟ ଦେଖି ଚାହିଁ ! ଚତୁର୍ଦ୍ଦିଗ ମରଣର ହାସ !

୭—ସାମ୍ୟବାଦୀ ଦେଶସେବୀ ଧନୀ-ସୌଧେ ଅଙ୍ଗୁଳି ଦର୍ଶାଇ,
ତର୍କି କହେ ଧ୍ୱଂସ ବିନା ଦରିଦ୍ରର ଅନ୍ୟ ଗତି ନାହିଁ !
ପର ଅଙ୍ଗ ପୁଷ୍ଟ ଯେତେ ନବସନ୍ତ ବିଳାସ ବ୍ୟସନେ
ଗତ୍ୟନ୍ତର ନାହିଁ ଯେବେ ନ ମିଶିବେ ମାଟିରେ ସେ ରଣେ ।
ବନ୍ୟାକ୍ଲିଷ୍ଟ ବୃଦ୍ଧ କହେ "କ୍ଷେଡ଼ା ନାହିଁ ବାବୁ ଅଭିଶାପେ,
ସୃଷ୍ଟିର ମଙ୍ଗଳ ହେଉ ଆମେ ପଛେ ମରୁଁ ଅମ୍ବ-ପାପେ !"
ପୁରାତନ ଏ ଧରାରେ କେତେ ଧ୍ୱଂସ କେତେ ସୃଷ୍ଟି ଲୀଳା
ପ୍ରାଚୀର ଭରଇ ବ୍ୟର୍ଥ—କହ ଏହି ବନ୍ୟା କାହିଁ ଥିଲା ?
ସଫଳ ଉଦ୍ଦେଶ୍ୟ ତାର ! ନ ବୁଝେ ସେ ଯେତେ ପରକାର,
ନାଚେ ନରକୀଡ଼ନକ ପଶୁ ସମ କରେ ହାହାକାର !
କାଣେ ଏକା ସେହୁ ସିନା ପଥ ଧାରେ କମ୍ପା କଲି ଠିଆ
ଉଦ୍ଦେଶ୍ୟ ତା ହେଉ ସିଦ୍ଧ ଏ ଜୀବନ ଯାଉ ଦାଝି ନିଅ !

ଜଗନ୍ନାଥ, ଜଗନ୍ନାଥ, ସେହୁ ଏକା ଭରସା ଜୀବନେ !
ଜନ୍ମ ନୀଳାଚଳ ବୃକ୍ଷ ଶାଖ୍ରୁ ନେବେ ନମେ ଜଗ୍ମ ଜଣେ !



## ରୂପହୀନା

୧—ରୂପସୀ କୁଳେ ତୋତେ ନ ମିଳୁ ପଛେ ଥାନ
ଶୋଚନା ନ କରବୁ ସଜନି ମୋହ ଘେଣ ।
ଅସିଲେ ଫୁଲ ତୋଳି ଦେବତା ଉପବନେ,
କମେକେ ଦେଲେ ବୁହିଁ ନିଜକୁ ଝ୍ନଲେଁ ଯଣେ !
ଶ୍ରାବଣ ଘୋର ଘନ କମେକେ ଗଲେ ଲୁଚି,
କୌମୁଦୀ ମାୟା ଲୋକ ଯେସନେ ଉଠେ ଫୁଟି,
ତା ବଳି ବିମୋହନ ଗୃହାଣୀ ସହୁ ତୋର,
ଶାୟୁକ ସ୍ଥାଣେ ବସି ତହିଁକେ ମନ ଚୋର !
ମଧୁର ଗ୍ରୀବାଭଙ୍ଗୀ ମଧୁର ମନ୍ଦହାସ,
ଅମର ଜୀବନର ଭାରତୀ ପରକାଶ;
ମଧୁର ଭ୍ରୂଯୁଗ କଞ୍ଚିତ ବ୍ରୀଡ଼ାନତ,
ସେ ପାଦତଳେ ଫୁଟେ କୁସୁମ କେତେ ଶତ !
ଦେଖିଲେ କୋଟିନିଧି ଲଭଇ ଅବା ପ୍ରାଣ,
ରୂପସୀ କୁଳେ ତୋତେ ନ ମିଳୁ ପଛେ ସ୍ଥାନ ।

୨—ଜୀବନ ମଧୁମାସ ଅବା ମଳୟ ବାଇ
ସେ ତନୁଲତା ତୋର ଛୁଇଁଛି ଅବା ନାହିଁ;

ହେ ଶର ଚପଳଗୋ ଅଧୀର ତୋର ଗତି,
କୁସୁମ ବନେ ଅବା ଖେଳଇ ପ୍ରଜାପତି !
କଥା କଥାକେ ତୋର ମୁରୁକି ପରକାଶ,
ଜୀବନ ସୁରଧୁନୀ ସମାନ କ୍ଷରେ ହାସ !
ଜାଣଇଁ ନୋହୁ ମୁତ କା ହୃଦ ସୋହାଗିନୀ,
ଏ ରୂପ ବରଣୀର କାହାକୁ ନାହିଁ କଣି ।
ମୁରୁକି ତେବେ ତୋର ନୁହଇ ଛଳେ 'ଉଣା
ଏ ପଥେ ଅକାତରେ ହାସ ପିୟୂଷ ବୁଣା ।
ସେ ରୂପ ମୁହିଁ ସେବା କରୁ ଗୋ ଉପହାସ
ପରାଣ-ଶତଦଳ ତୋଲାଗି ପରକାଶ
ମୁରୁକି ଭଙ୍ଗୀ ତୋର ନୀରବେ କରେଁ ଧ୍ୟାନ,
ରୂପସୀ କୁଳେ ତୋତେ ନ'ମିଳୁ ପଛେ ଥାନ ।

୩—ଚମ୍ପକ ତୋର ତନୁ ନୁହଇ ତୋର ସହ
ତୋ ତହୁଁ ବଳ ରୂପ ଧରଇ କେତେ ମହୀ ।
କବିତା କଳପନା ସ୍ଫୁରେନା ତୋତେ ଦେଖି
ଭରମେ ରୂପକାର ନ ଯାଏ ରୂପଲେଖି ।
ନାହିଁ ତୋ ତିଳ ଫୁଲ ନାସିକା ଗଜଗତି
ତୋ ଦେହ ବାସେ ଅଳି ନ ବୁଲେ ଚଉକତି ।
ତେବେ ତ ସହ ମୋର ଉପମା ନୁହେଁ ଶେଷ
କରିବେ କେତେ ଗୁଣୀ କବିଏ ମୋତେ ଶ୍ଳେଷ ।
କହିବେ ଜଗଦ୍‌ଗବ ହେଲାଣି ମତିଭ୍ରମ
ଅପାବେ ପାବେ ତେଣୁ ଢାଳଇ ସବୁ ଶ୍ରମ ।

ମାତର ଅନୁରାଗ ବଢ଼ଇ ଦନୁ ଦନ ।
ତୋ ଲୀଳା ପରକାଶେ ସକଳ ଅମଳାନ ।
ଆସଇ ନଭ ଧୀରେ ଜୀବନ କ୍ଷୀଣବୃତ
ମରଣ ପରଜାତ ମୋର ଅମରାବତୀ ।

୪—ରୂପର ଗଉରବ ତୋର ଗୋ ଅପ୍ରକଟ
ସେ ଲଗି ସହଜେ ମୁଁ ଛୁଇଁ ତୋ ତନୁତଟ ।
ବୁଡ଼ଇ ମନମତେ ତୋ ପ୍ରାଣ ପାରାବାରେ
ବଫଳ ବେଳାମୋର ନୁହଇ ଭୂମିଧାରେ ।
ଏ ଭବ ହାଟେ ସହ ଦଦନ ବ୍ୟବସାୟ
ତମିରେ ଭ୍ରମି ମିଳେଛ କାହିଁକ ଅସହାୟ ?
ତୋ କ୍ଷୀଣ ହାସ ଭଙ୍ଗୀ ରୂତୁରା ନୁହେ ହେୟ
ହୃଦୟ ପୁଟର ତୋର ଅମୂଲ୍ୟ ମୋ ପାଥେୟ ।
ନୟନ ଅନ୍ତରାଳେ ପୀରତ କମଳ ଗୋ
ନଶ୍ୱର ତଳେ ପ୍ରାଣ ପିୟୂଷ ଭରଲ ଗୋ ।
ଦେଖି ସେ ପୁଣ୍ୟ ଶିରୀ ପରାଣ ମନ ଲୁବ୍‌ଧ
ଗଣିତା ନୋହୁ ପଛେ ମୋ ପ୍ରୀତ ମଣି ଶୁଦ୍ଧ ।
ଲୋତଙ୍କ ଅସେ ଭର କ ଦେବ ସନମାନ
ହେ ଶର ରୂପହୀନା ଦୂର ସାଗର ଗାନ ।

[ ୧୯୩୩ ]



# ଅଗସ୍ତ୍ୟ——

୧—ଅଗସ୍ତ୍ୟ ଆସିଛ ତୁମେ ? ଦେଖି ନାହିଁ ଥରେ
ମାତର ପାରୁଛି ବୁଝି ଆକାଶ ସାଗରେ—
ତଟିନୀ ପୁଲକେ ଦୂର ଶ୍ୟାମ ଶୈଳ ଦେହେ
ଲଗାଇ ଗଲଣି ପୁଣ୍ୟ ପରଶଟି ସ୍ନେହେ ।
ନୀଳଇନ୍ଦୀବର ବକ୍ଷ ଚୌଦଟେ ବିକାଶ
ଅସ୍ଫୁଟ ଆଶାର କିବା କ୍ଷୀଣ କାଶ-ହାସ ।
ଲଭିଛି ଆକାଶେ ନବ ଜୀବନ ସ୍ପନ୍ଦନ
ଅଭିଶପ୍ତ ଏ ଧରାର ଶାପ ବିମୋଚନ ।
ସକଳ ପବନ ସ୍ୱଚ୍ଛ ବିଲୋକ ମଙ୍ଗଳ
ବନ୍ଦୀମୁହଁ କାରାବାସୀ ଅଶ୍ରୁ ଛଳ ଛଳ ।
ଦେଖିନାହିଁ ; ମାତ୍ର ତୁମ ପ୍ରୀତ ସ୍ପର୍ଶ ଲାଗି—
ମୋ ପରାଣ ପ୍ରଣୟିନୀ ନିତ୍ୟ ଅନୁରାଗୀ ।
ଗାଉଛି ଗୋପନ ସୁରେ ନୟନ ପ୍ରତିମା
ଶୁଭ୍ରହେବ କେବେ ମୋର କର୍ଦ୍ଦମ କାଳିମା ?

୨—ନିସ୍ତରଙ୍ଗ ଜଳସ୍ରୋତ ! ପ୍ରଶାନ୍ତ ଆକାଶ !
ଚୌଦିଗେ ଖେଳଇ ସେନେହେ ସ୍ନିଗ୍ଧୋଜ୍ଜ୍ୱଳହାସ !
କମନୀୟ ସ୍ଥଳପଦ୍ମ ଦୂର ଆଲୋକର
ଉନ୍ମିଳିତ ଚତୁର୍ଦ୍ଦିଗେ ପୁଲକେ ଅନ୍ତର ।

ଦୂର ଶ୍ୟାମ ଧାନ୍ୟ କ୍ଷେତ୍ରେ ଲହରୀ ଦୋଳନ
ସୁଦୂର ନୀରଦ ମାୟା ସ୍ମୃତିର ସ୍ପନ୍ଦନ ।
ସଜଳ ପବନ କଳ, ସ୍ପର୍ଶେ ତବ ଧନ୍ୟ,
ଅନ୍ଧକାର ଗୃହ କୋଣେ ମାତ୍ର ମୁଁ ନଗଣ୍ୟ—
ଏକାକୀ ରହିଲି ପଡ଼ି ଜଞ୍ଜାଳ ଯେ ଇମା
ତୁମର ପରଶ ବିନା କରିବ କେ କ୍ଷମା ?
ନିଶିଦିନ କରୁଛି ମୁଁ ତୁମର ପ୍ରତୀକ୍ଷା
ଅଶ୍ରୁନେତ୍ରେ, ନିତ ତବ ଅନୁଗ୍ରହ ଭିକ୍ଷା ।
ପରଶେ କରିବ କୋଳ ସୁବର୍ଣ୍ଣ ମୋ ଲିହା
ଜାଗିଛି ପ୍ରଭାତେ ପ୍ରାଣେ ଅଭିସାର-ସ୍ପୃହା !



## *ଦେବଦୂତ

୧—ପଠାଉଛ ଦେବଦୂତ ମାନବ ସ୍ୱରୂପେ
ଲଭିବୁଁ ଆଲୋକ ପ୍ରେମ ଭ୍ରାଳି ଅନ୍ଧକୂପେ ।
ନଗଣ୍ୟ ଜୀବନ ମୂକ ଦୈନ୍ୟ ନିପୀଡ଼ିତ
ଶୁଣାଉଛ ମର ମୁଖେ ଅମୃତ ସଙ୍ଗୀତ !
ଶୁଣାଉଛ ତୁମ ବାଣୀ ଅକ୍ଷର ଭରସା,
ଶୁଷ୍କ ରୁକ୍ଷ ପ୍ରାଣ ଭୂମେ ମଙ୍ଗଳ ବରଷା ।
ଜୀବନ ଭରତା ନିତ୍ୟ ଜୀବନ ଅଧାର !
ଅସୀମ ଅନନ୍ତ ତବ କ୍ଷମା ମାଗିବାର ।

* ୧୯୩୩ ସାଲ । ରାଜା ରାମମୋହନଙ୍କ ବ୍ୟକ୍ତିତ୍ୱ ବିଷୟରେ ଦୀନବନ୍ଧୁ ଅଣ୍ଡ୍ରୁଜଙ୍କ ବକ୍ତୃତା ଶ୍ରବଣାନ୍ତର ରଚିତ ।

ଜାଣି ଜାଣୁ ନାହୁଁ ଏ ସକଳ ମୂକ ପଶୁ
ତେଣୁ ନିତ୍ୟ କାଳ ଧରି ମାନବ ପରଶୁ—
ପଠାଉଛ, ଶର ମୌନ ! ଦୟା ନୁହେଁ ଊଣା !
**କୋଟି** ପଶୁ ପ୍ରାଣଲୌହ କରବାକୁ ସୁନା ।
ଅଟଳ ନ ହେଲା ତେବେ ଅଧ୍ରୁବ ବିଶ୍ୱାସ
ଶରଦନ ଅନ୍ଧକୂପେ ସର୍ବନାଶ ଦାସ ।

୨—ଦେବତା ତୁମର ବୂତ ପ୍ରଶାନ୍ତ ମୂରତ
ଉଜ୍ଜ୍ୱଳ ନୟନ ବିଭା ଯେସନେ ମୁକତ !
ଦେଖିଛୁ ମୁଁ ଅନ୍ଧକାରେ, ଲଭିଛୁ ସାନ୍ତ୍ୱନା,
ଭୁଲିଛୁ ନିରେଖି ରୂପ ସହସ୍ର ଲାଞ୍ଛନା ।
ଶତ ପ୍ରବଞ୍ଚନା ଦୈନ୍ୟ ମୋ କାଳିମା ରାଶି,
ତା ଅମୃତ ବାଣୀସ୍ପର୍ଶେ ଯାଏ କ୍ଷଣେ ଭାସି ।
ଉଜ୍ଜ୍ୱଳ ସୁନ୍ଦର ନର ହୃଦୟର ମଣି
ତା ପାଦ ପରଶ ବହି ଗର୍ବିତା ଅବନୀ ।
ଅଟଳ ବିଶ୍ୱାସ ଅଣା ଯେସନେ ବଡ଼ଶୀ
ନିମେଷକ ଲାଗି ହେଲେ ନିଏ ଆକରଷି ।
ପଙ୍କିଲ ଏ ସରୋବରୁ ! ଫୁଟେ ଶତଦଳ
ବିକୃତ ପରଶି କ୍ଷଣେ ବାଷ୍ପ ଛଳ ଛଳ ।
ମାନବ ସେ ? ହେଉ ପଛେ, ମାନବ-ଦେବତା !
ତାପଦ ଧୂଳିରେ ଲୋଟି ଯାଉ ଦୀନ ମଥା ।

୩—ରଜନି ଅବସାନେ ଯେପରି ଧୀରେ ଉଠେ ସୂର୍ଯ୍ୟ
ଅବସାଦ ପାଶବାରୁ ଉଠସନେ ହେ ପୂଜ୍ୟ—
ଆସ ଯୁଗେ ଯୁଗେ ବୁଦ୍ଧ, ଖ୍ରୀଷ୍ଟ ଚୈତନ୍ୟ
ବଜାଇ ଗମ୍ଭୀର ସ୍ୱରେ ପ୍ରୀତି ପାଞ୍ଚଜନ୍ୟ ।
ସେ କି ମିଥ୍ୟା ? ମାନବ କି ଶୁଣିନାହିଁ ବାଣୀ ?
ପ୍ରଖର ଧ୍ୱଂସର ବନ୍ୟା ଆସିନି ଉଜାଣି ?
ଅସିକ୍ତ, ଅସ୍ପୃଷ୍ଟ ଆଜ ନାହିଁ ଅବକାଶ,
କ୍ଷୁଦ୍ର ଏ ମାନବ ପ୍ରାଣେ ଦେବତା ପ୍ରକାଶ,
ସହଜ ସରଳ ଭାବେ ହୁଅଇ ସମ୍ଭବ,
ନୀରବେ ଲଗିଛୁ ପ୍ରୀତି-ବିଶ୍ୱାସ-ଉତ୍ସବ ।
ନିଃଶବ୍ଦେ ପ୍ରୀତିସିନ୍ଧୁ ଉଠଇ ଉଚ୍ଛୁଳି
ମରେଁ ମୁ ବିଫଳେ ସିନା କୂଳେ ବୁଲି ବୁଲି ।
ପୁଳିନର କୋଳାହଳେ ନିତ ହେଲି ବଣା
ତୁମ ନିଃଶବ୍ଦ ଗତି କାହୁଁ ପଢ଼େ ଜଣା ?

୪—ହେ ମାନବ ବନ୍ଧୁ ! ଆଜ ମୋ କୁଟୀର ଦ୍ୱାରେ,
ଆସିଲ କରୁଣା ବହ୍ନି ଯେବେ ଦୈନ୍ୟ ବାରେ—
ଶୁଣେ ନିଃସ୍ୱ ଅନ୍ତରର, କରତାକୁ ସ୍ପର୍ଶ,
ତୁମ ନିତ୍ୟ ପ୍ରେମ ପଥେ ରହୁ ତାର ଯଶ ।
ସେ ଶିଳା ପ୍ରସ୍ତର ଖଣ୍ଡ ହେଲେ ଯାଉ ଦବି
ଧନ୍ୟ ହୁଏଁ ମୂକ ପଶୁ ଅଙ୍ଗ ସଙ୍ଗ ଲଭି ।

ଅଛୁ ଅଶ୍ରୁ ? ଦୀର୍ଘଶ୍ୱାସ ପ୍ରଚ୍ଛନ୍ନ ଅନ୍ତରେ ?
ବରଷି ଯାଅଗୋ ଥରେ ମୋ ପରାଣ ପରେ ।
ଶୁଣାଅ ପୁଣି ସେ ବାଣୀ ଯେ ବାଣୀ ଶ୍ରବଣେ
କମଲ ସୈକତେ ଫୁଟେ ବିଶ୍ୱାସ ଜୀବନେ ।
ଜୀବନେ ଜାଣିଛ ତୁମେ ଦେବତା କରୁଣା
ଦୀନଜନେ ସେ ସମ୍ପଦୁ କରନାହିଁ ଊଣା ।
ଢାଳିଦିଅ ଅଶ୍ରୁ ବନ୍ଧୁ ! ଭୁଲି ଏ ମରଣ
ଲଭିବି ଅନ୍ତରେ ସତ୍ୟ-ଜୀବନ-ସ୍ପନ୍ଦନ ।

୫—ତୁମ ବାଣୀ ଶୁଭେ ଯଥା ଅତଳ ସାଗରୁ
ଗମ୍ଭୀର ମୃଦଙ୍ଗ ଧ୍ୱନି ! ବ୍ରହ୍ମାଣ୍ଡ ଅନ୍ତରୁ—
ସୃଷ୍ଟି ଅଦ୍ୟ ସ୍ତୁତି ବାଣୀ ପବିତ୍ର ମଙ୍ଗଳ,
ସ୍ଫୁରେ ଅବିରାମ ଚିରପ୍ରେମୀ ଅବିରଳ—
ନିର୍ବିକାରେ; ପ୍ରାଣଦୀପ କ୍ଷଣେ ଉଠେ ଜଳି,
ତୁମ ପୁଣ୍ୟ ସ୍ପର୍ଶେ ଶିଳା କ୍ଷଣେ ଯାଏ ଗଳି !
ମାତ୍ର ତୁମେ ଛାୟା ସମ ଗଲେ ଅପସରି,
ସକଳ ପାଶୋରି ପୁଣି ବରଇଁ ଶର୍ବରୀ ।
ଅନ୍ଧ ବିକଳାଙ୍ଗ ମୁଁ ଯେ ! ପଙ୍କ ପଥ ପାର୍ଶ୍ୱେ—
ଦେଖିଛି ମୁକତି ପଥ ବୋଲି ମୁଁ ଅଶ୍ୱାସେ—
ଅପଣାକୁ, ଭୁଲେ ପୁଣି ଅସ୍ମି ଅଭିମାନେ—
ଲଭିଛି ମୁଁ ଦିବ୍ୟଗତି ଅମୃତ ପରାଣେ !
ଅବିଦ୍ୟା ଗହ୍ୱରୁ କିଏ କରିବ ଉଦ୍ଧାର
ବତାଇ ନ ଦେଲେ ପଥ ଚିର ଅପଣାର ?

୭—ଅଲୌକ ସନ୍ଦେଶ ଘେନ ଅସ ଦେବଦୂତ,
ଅନ୍ଧକାର ଦୈନ୍ୟ ମେଳେ ନୁହେ ଅଦ୍ଭୁତ !
ମାତର ମାନବ ରକ୍ତ ମାଂସ କଳେବର
ପ୍ରସ୍ଫୁଟିତ ପଙ୍କେ ଯଥା କମଳ ସୁନ୍ଦର !
ସହଜ ସରଳ ଭାବେ ଲଭିଛ ବିକାଶ,
ତେଣୁ ଦୀନ ମାନବର ଅଲୌକ ଆଶ୍ୱାସ !
ତୁମ ନେତ୍ର ଯୁଗେ ଫୁଟେ ନୈରାଶ୍ୟର-ଆଶା,
ତୁମର ଅନ୍ତରେ ପ୍ରୀତି ଅନୁକମ୍ପା—ଭଷା,
ବଦନ ମଣ୍ଡଳେ ନିତ୍ୟ ଉଛୁଳା ସୌମ୍ୟତା,
ନିରେଖିଲେ ଥରେ ନର ଭୁଲେ ଯତ ବ୍ୟଥା !
ଅବାଧ୍ୟା ବର୍ଦ୍ଧିତ ବୁଦ୍ଧି କରେ ପ୍ରତ୍ୟାଖ୍ୟାନ ?
କ୍ଷମ ଅପରାଧ ସେ ଯେ ଶୈଶବ ଅଜ୍ଞାନ !
ପ୍ରସାର ଦକ୍ଷିଣ ଭୁଜ ! ପରମ ସୁହୃଦ !
ପୁଣ୍ୟ ସ୍ପର୍ଶେ ହେଉ ସୁପ୍ତ ପରାଣ ଉଦ୍‌ବୁଦ୍ଧ ।



## ପ୍ରଣୟର ଆଦ୍ୟାଶଙ୍କା

— ୧ —

ମୋ ଯୌବନ ଉପବନେ ବିକଶିତ ଯେତେ ଜାତି ଫୁଲ,
ଶାରଦ ପ୍ରଭାତେ ବନ୍ଧୁ ସେ ସକଳ ଯତ୍ନେ କରି ତୋଳ,
ଦେବତାର ବେଦୀ ପ୍ରାନ୍ତେ ହେଲି ଉଭା ! ଶିର ଅବନତ !
ଦେଖା ହେବ ନାହିଁ ଭଲ ଶଙ୍କା ଭୀତି ପୀଡ଼ଇ ନିରତ !

ମାତର ଦୁର୍ଭାଗ୍ୟ ମୋର ! ପୂର୍ବ ଜନ୍ମେ ନାହିଁ ତପ ପୁଣ୍ୟ,
ମନ୍ଦରେ ନ ଦେଇଁ ପାଦ ଦେବତାର ସିଂହାସନ ଶୂନ୍ୟ !
ବ୍ୟଥିତ ଅନ୍ତରେ ତହୁଁ ଆସୁଥିଲି ଅଭାଗୀ ବାହାରି
ଡାକିଲା ଯେ କ୍ଷୁବ୍ଧ-ଆତ୍ମା ରକ୍ତ-ମାଂସ-ପ୍ରଣୟ ଭିଖାରୀ—
ସେ କି ତୁମେ ? ତୁମେ ? ହେଉନାହିଁ ତଳେ ପରତୀତ !
ତୁମରି ପ୍ରଣୟ ସେହେତୁ ଆଜି ଏଥୁଁ ଯୋଜନ ଅତୀତ !
ରୂପସୀ ରମଣୀ ମୁହିଁ ? ଗର୍ବିତ ଧରଣୀ ମୋତେ ଧରି ?
ରମଣୀର ଅଭିମାନ ଭୁଲି କ୍ଷଣେ ଲାଜେ ଯାଏ ମରି !
ଯେ ଧନେ ବଢ଼ାଇ ଭ୍ରାନ୍ତ ଦେବତାର ନୁହେ ପରିଚୟ
ନାରୀ ମୁହିଁ—ନୁହେଁ ମାଂସମେଦ—ସେ ମୋ ଶର ପରାଜୟ !

—୨—

ନାହିଁ ମୋର ତତ୍ତ୍ୱପ୍ରଜ୍ଞା, ଅତି ଦୀନା ମୁଁ ତରୁଣୀ ବଧୂ,
ଜାଣିନାହିଁ ସବାଧରେ ପ୍ରଚ୍ଛନ୍ନ ବା କେତେ ମୋର ମଧୁ,
ନ ଜାଣେ କି କଥା କହେ କାନ୍ତ ଏ ମୋ ନୟନ ଭଙ୍ଗିମା,
ଅକ୍ଷୁଣ୍ଣ ପରାଣ ମାନ ନାହିଁ ପାଏ ଅପମାନ ସୀମା ।
ଦାରୁଣ ବ୍ୟଥାରେ ଝରେ ନୀର ନେତ୍ରୁ ଭୁଲାଇଁ ନିକର,
ବସ୍ନ କେ ଚରନ୍ତ୍ରା ହେଲେ ଗୌର ତନ୍ତୁ ଲଳିତ ଅଧର !
ଲଭନ୍ତି ସହଜେ ଅବା ଶିରାଧ ଦେବତା ସନ୍ଧାନ
ଯା ଲାଗି ନିଭୃତ ପୁରେ ମରେ ଝୁରି ତରୁଣୀ ପରାଣ !
ଯେ ରୂପ ଜାଳଇ ବହ୍ନି, ମୁକ୍ତି ପଥ କରେ କଣ୍ଟକିତ,
ଯା ମୋହେ ନିର୍ବାଣ ଲଭେ ଏ ଜୀବନ ମଙ୍ଗଳ ସଙ୍ଗୀତ,
ଶୋଷେ ଯେ ଅନନ୍ଦ ପ୍ରୀତି ପରକ୍ଷିତ ଦୁର୍ବହ ଜଞ୍ଜାଳ,
ତା ଦେନ କରବ ଗର୍ବ କେଉଁ ନାରୀ ? ବନ୍ଧୁ, ସେ ତା କାଳ !

ସେ ଦୃଷ୍ଟି ଫେରାଅ ସଖା ! ବ୍ୟର୍ଥ ନୋହୁ ପୂଜା ଅୟୋଜନ !
ଦେବତା ସାନ୍ନିଧ୍ୟେ ହେଉ ଧନ୍ୟ ପ୍ରୀତି-ପ୍ରଥମ-ମିଳନ !

—୩—

ନୁହେଁ ମୁଁ ଉର୍ବଶୀ ମେନା, କଳ୍ପଲୋକେ ନୁହେ ମୋର ବାସ,
ନାହିଁ ମୋ ଚତୁରା ଭଙ୍ଗୀ କରିବାକୁ ଲୀଳା ପରକାଶ !
ହାବ ଭାବ ବ୍ରୀଡ଼ା ଛଳ ନାହିଁ ଜାଣେ ସ୍ତମ୍ଭନ କୌତୁକ,
ବାସ୍ତବ ବାଳିକା ବଧୂ ! ଅସହାୟ ଅନଭିଜ୍ଞ ମୂକ !
ତୁମରି ହୃଦୟ ବନ୍ଦି ଜାଲ ବାନ୍ଧୁ ରଚିବାକୁ ମାୟା,
ଜାଣିନି କୁହୁକ ମନ୍ତ୍ର କହ ତୁମ ଇଚ୍ଛା ଯାହା ତାହା ।
କାହିଁକି ହତାଶ ହେବ ଭାଳି କଳ୍ପଲୋକ ମାୟାବିନୀ ?
ବିନୟେ କହୁଛି ମୁଁ ଗୋ ସେ ମନ୍ଦିରେ ନିତ୍ୟ ପୂଜାରିଣୀ !
ଭବ ପୁଣ୍ୟ ପିଠେ ଯହିଁ ଧ୍ୟାନରତ ନିର୍ବିକାର ଶିବ
ବାଢ଼ିବି ଜୀବନ ପୂଜା ସକଳ ସାଧନା ଋଦ୍ଧି ଦେବ ।
ଜରି ତନ୍ନୁ ପ୍ରାଣପାତ ଜାଣେ ନାହିଁ ହେବନା ସଫଳ,
ଶକ୍ତିହୀନା ନାରୀ-ତପଃ ଢାଳି ଶତ ନୟନର ଜଳ ?
ହେବ କି ଗ୍ରହଣ ଯୋଗ୍ୟ ? ସୁଲଭ କି ହେବ ସାର୍ଥକତା ?
ବିମୁଗ୍ଧ ପ୍ରଣୟୀ ମୋର ! କି ବୁଝିବ ନାରୀ ହୃଦ ବ୍ୟଥା ?

—୪—

ବାସ୍ତବେ ରଚିବା ବାନ୍ଧୁ ଜୀବନର ସକଳ ସ୍ୱପନ,
କାଳ ସିନ୍ଧୁ ଅନ୍ଧକାରୁ ଖୋଜି ନେବା ଅମୂଲ୍ୟ ରତନ,
ଶର ଅଭିପ୍ରାୟ ତୁମ ଅନଭିଜ୍ଞା ବାଳିକା ବଧୂର,
ସଂଗ୍ରାମେ ଅକ୍ଷତ ସତେ ହେବ ମୋର ସୀମନ୍ତ ସିନ୍ଦୁର ?

ନାହିଁ ସେତେ ଅଣ ! ...      ...      ...

ତେଣୁ ବନ୍ଧ୍ର ପଦେ ଧରିବାର ଲାଗି
ପ୍ରୟାସ ନ କରୁଁ ତୁମେ ଶର ଦ୍ରୋଳା ହେଉଛ ବୈରାଗୀ !
ଛୁଟ କେଉଁ ସ୍ୱପ୍ନ ପଛେ ଅବୋଧ ମୁଁ ନ ପାଏ ତା ଅନ୍ତ,
ପଞ୍ଜର ପଞ୍ଜର ଭେଦ ଖୋଜ ବୁଲ ଅକୁଳ ବସନ୍ତ !
ବନ୍ଧେ ତେଣୁ ଥରେ କର ! ଶିଥିଳ ମୋ ମାଧୁରି ଅଚ୍ଛେଦ୍ୟ !
ସ୍ୱପ୍ନ ନୁହେ ବାସ୍ତବ ମୁଁ ! ସ୍ୱଳ୍ପ ପ୍ରୀତ ମୋ ଦୀନ ନୈବେଦ୍ୟ !
ନେବ ଅବା ନାହିଁ ତାକୁ, ଫେଡ କହ, ଅଛୁ ନା ସାହସ ?
ତୁମରି ପୌରୁଷେ ବନ୍ଧୁ କହ ସତେ ରଖିବ ତା ଯଶ ?
ରୂପ ଅଭିଳାଷୀ ଅବା କର ଯେବେ ଦଗ୍ଧ ଅସହାୟ—
ଆତ୍ମ ପ୍ରବଞ୍ଚନା ପାଇଁ କ୍ଷମି ବନ୍ଧୁ ଦିଅ ଗୋ ବିଦାୟ !

[ ୧୯୩୪ ]



## ଚକ୍ଷୁ ଚକୋରେ

ଯେ ନୟନେ ନାହିଁ ବାସନା ତୀବ୍ର ପୀଡ଼ା,
ନିତ୍ୟୋତ୍ସବ ଯେ ନୟନେ କରେ କ୍ରୀଡ଼ା,
ସେ ବେନି ନୟନ ଦବାନଳ ଲୁହିଁ ଲୁହିଁ
ବ୍ୟଥିତ ଚକୋର ଗୀତ ତାର ଯାଏ ଗାଇ । ୧ ।

ସୁପ୍ରୋତ୍ଥିତ ଶାରଦ ପ୍ରଭାକ କାନ୍ତ,
ଅଥବା ବ୍ୟଥିତା ସନ୍ଧ୍ୟା କରୁଣ ଶାନ୍ତ,
ମଙ୍ଗଳ ସଦା ସେ ବେନି ନୟନୁ ଝରେ;
ବ୍ୟଥିତ ଚକୋର ଚାହିଁ ଚାହିଁ ତାକୁ ମରେ । ୨ ।

ମେଘ ଆବୃତ କରୁଣ ଜୋଛନା ପରି?
ପରଶି ପରାଣି ଦଏ ନାହିଁ ପୁଣି ଧରି,
ଶୂନ୍ୟ କାସାରେ ସଜଳ ସେ ନୀଳକଇଁ,
ଚାହିଁ ଏ ଚକୋର ତା ବେଦନା ଯାଏ କହି ।୩।

ଦେଖିଛ ପଥିକ ସାର୍ଥକ କରି ଶ୍ରମ ?
ବହିଲ ସେ କେବେ ସବୁଜ କ୍ଷେତ୍ର ଭ୍ରମ !
ଶୂନ୍ୟ ଆକାଶେ ଅବା ଏକାକିନୀ ତାରା,
ପ୍ରତପ ଚନ୍ଦ୍ର ତିମିର ଗର୍ଭୁଁ ଢାଳଇ ଲୋତକ ଧାରା ! ।୪।

ଜନନୀର ତହିଁ ଶତ ମଙ୍ଗଳ ଗୀତ,
ଛାଡ଼ନି ମାତର ପ୍ରଣୟ ଶଙ୍କା ଭୀତ;
ସଜଳ ଯେସନେ ଶୈଶବ ସରଳତା
ଭରେ ସେ ନୟନ ନୀଳାକାଶ ଅବା
ସାଗର ଗଭୀର ବ୍ୟଥା ! । ୫ ।

ଶାନ୍ତ ମାଧୁରୀ ହୁଏ ନାହିଁ ତଳେ ମାପି,
ପ୍ରଣୟୀ କାବ୍ୟେ ପାରେ ନାହିଁ କେହି ଥାପି,
ସାଗର ସେ ପାରୁଁ ଗଭୀର ବଂଶୀ ତାନ !
ସେ ନୟନେ ଚାହିଁ ବ୍ୟଥିତ ଚକୋର
ଢାଳେ ତାର ଅଭିମାନ । ୬ ।

'ପ୍ରଭାତ କମଳ ସମାନ ସେ ଅକ୍ଷିପତା !
ମେଲିଲେ ଝରଇ ଅମୃତ ମାଦକତା,
ମୃତ୍ୟୁ ଅକୁଳ ଜୀବନ ସ୍ପର୍ଶ ପାଇ,
ବ୍ୟଥିତ ଚକୋର ଗାଏ ନିଶିଦିନ
ଯୁଗଳ ନୟନ ସ୍ତୁତିଁ । ୭ ।

[ ୧୯୩୪ ]



## ବାସର ଗୃହ

—୧—

ବାସର-ମିଳନ-ରବି ! ଶେଷ ଯାମ ! ଅସ୍ତାଚଳେ ଶଶୀ ! .
ବ୍ରୀଡ଼ା, ନିମୀଳିତ ନେତ୍ରେ ପ୍ରଣୟୀରେ ମୁଗ୍‌ଧେ କହେ ହସି
ବହ୍ନିଲତା ପ୍ରଣୟିନୀ "ମନେ ଥିବ ମନେ ଥିବ ବନ୍ଧୁ ?
କହିବଟି ସତ କରି ?…… ଅନଭିଜ୍ଞା ଏ ତରୁଣୀ ବଧୂ—
ଭାବୁଛି କି ଏତେ ଭାଗ୍ୟ ହେବ ବୋଲି ଅମର ଅଙ୍କିତ
ସେ ଚପଳ ଚିତ୍ରପଟେ ? …… କିବା ଶୁଣେ ? …… …
ଭୀଳ ସଙ୍କୁଚିତ !

ମନେ କି ପଡ଼ିବ ବନ୍ଧୁ ଅଜର ଏ କ୍ଷଣିକ ମାଧୁରୀ ?
ପରାଣ ପରଶି ଜ୍ୟୋସ୍ନା ପୁଣି ଏହି କ୍ଷୁଦ୍ର ସ୍ୱପ୍ନପୁରୀ ?
ମନେ କି ପଡ଼ିବ ନିଃସ୍ୱ—ନିବେଦନ,ବ୍ରୀଡ଼—ଅଭିମାନ ?
ଚାତୁରୀ ସୋହାଗ ? ସେବେ ଭୀମ ସ୍ୱରେ ଜୀବନ ସଂଗ୍ରାମ—

ଡାକିବ ପୌରୁଷେ ତବ ଧୂମ ହେବ ସହସ୍ର କଳ୍ପନା !
ଅଶ୍ରୁଜନ ସଙ୍ଗିନୀରେ ନ ଭୁଲିବ ? ହେବନାହିଁ ବଣା ?
ଡାକିବ ଅଦର-କଣ୍ଠେ ଶୁଷ୍କ ଯେବେ ପ୍ରାଣ-ଧାରା ? ହାୟ !—
ବିଦାୟ ବାସର-ଗୃହ ! ବନ୍ଧୁ ମୋର, ବିଦାୟ···ବିଦାୟ !

—୨—

"ଭୁଲି ଯିବ ? ଭୁଲି ଯିବ ?" ଝାଣି ଦେଇ କହିଥ ଉଷସୀ—
ଉତ୍ତରେ ପ୍ରଣୟୀ ହସି—ରହ, ଦେଖିନ ଏଁ ଭଲ କରି
ଚନ୍ଦ୍ରରୁ ଚପୁଡ଼ ସୁଧା ଝରେ ବେନି ଚତୁର ନୟନ,
ବନ୍ଧୁଲି ନିନ୍ଦିତ ସେହ କମନୀୟ ଅଧର କମ୍ପନ,
ଅନାବୃତ ଶୁଭ୍ର ଗ୍ରୀବା, ତୁଷାର ଧବଳ ବାହୁ ଲତା,
ବିନୟେ କହୁଛ ଖୋଲି ଖୋଲି ଥରେ ନିମୀଳିତ ପତା !

ରୁଚିର ସର୍ବାଙ୍ଗ ତବ ସ୍ଫୁରଇ ଯେ ଅଜସ୍ର ଅବାରିତ—
ପଥଶ୍ରାନ୍ତ ଏ ପଥିକ ପିଇ ନେଉ ଜୀବନ-ସଙ୍ଗୀତ !
ବାସ୍ତବ ସଂଗ୍ରାମ ଭୟ ? ଛି ! ଛି ! ସେ ଯେ ବାଞ୍ଛା ଚପଳତ ।
ଏ ଜୀବନ ଯାର ଦାନ ବୁଝିବେ ସେ ସଂଗ୍ରାମ ବାରତା !
ଶ୍ରାନ୍ତ ପାନ୍ଥ-ଜନ ପ୍ରାଣ କଲେ ଯେବା ମାଧୁର୍ଯ୍ୟ ମଣ୍ଡିତ,
ଅଙ୍ଗର ଏ ପ୍ରୀତି-ରସ କରେ ଯାର କରୁଣା ଇଙ୍ଗିତ,
ଏ ପୌରୁଷ କଲେ ଦାନ ପୂର୍ଣ୍ଣ ହେବ ପୀରତି ଅଧାର !
ଅଙ୍ଗର ମାଧୁର୍ଯ୍ୟ ଲାଗି ପ୍ରାଣ—ପ୍ରିୟା କର ନମସ୍କାର !

—୩—

ଏ ପଥିକ-ପାନ୍ଥଶାଳା ତୁମରି ଏ ବାସର ଭବନ !
ଅଶେଷ ମାଧୁର୍ଯ୍ୟ ଭରା ସେଠାରେ ସ୍ୱର୍ଗ-ଜୀବନ୍ତ-ସ୍ୱପନ !

ଅଥବା ସାଗର ପାରେ ମୁକ୍ତ କବି ଚନ୍ଦ—କଳ୍ପଲୋକ !
ତୁମେ ଅଧିଷ୍ଠାତ୍ରୀ ଦେବୀ ! ଭୁଲିଯାଏଁ ନିର୍ଯାତନ ଶୋକ !
ନିରେଖିଲେ ସେ ଆନନ, ସ୍ୱେଦବିନ୍ଦୁ ପଡ଼ୁ ପଡ଼େ ଖସି,
ମଳିନ ସୁନ୍ଦର କ୍ଷଣେ ! ତବ ସ୍ପର୍ଶେ ଚମ୍ପକ-ଉର୍ବଶୀ !
କି ଭୟ ଭାବନା ମୋର ? ଲଗୁ ପ୍ରାଣେ ସଂଗ୍ରାମର କାଳି !
ସକଳ କଳଙ୍କ ଧୌତ କରିବ ଗୋ ସେ ଅଙ୍ଗୁଳି ଗୁଳି,
ପୋଛିବ ବେଦନା ଅଶ୍ରୁ, ପ୍ରଦୀପ ଗୋ ଜାଳିବ ଅନ୍ଧାରେ,
ତୁମରି ଆଶ୍ୱାସ ଲଭି ବାହିବି ଅକୂଳ ପାରିବାରେ
କ୍ଷୁଦ୍ର ମୋ ତରଣୀ ଗୋଟି ! ପ୍ରୀତି-ହାସ୍ୟେ ପଥ ଆଲୋକିତ !
ତୁମ କଣ୍ଠେ ମିଶାଇ ମୁଁ ଗାଇବି ଗୋ ବିଜୟ ସଙ୍ଗୀତ !
ଫେରିବ ସୈନିକ ଅବା କ୍ଷୁଣ୍ଣ ପରାହତ, ବ୍ୟର୍ଥ କାମ !
ବାସର ଭବନେ କି ରାତି ଲାଗି ନ ଦେବ ବିଶ୍ରାମ ?"



"ଜାଣିଛି ପଥିକବନ୍ଧୁ ! ହେ ଅଜ୍ଞାତ ଦୂରଦେଶ ପାନ୍ଥ !
ଗୁଳିବା ଅଗମ୍ୟ ପଥ ତୁମରି ସେ ସାରା ଅବିଶ୍ରାନ୍ତ ।
ନ ଜାଣେ ମାତର କିବା ଶୁଣି ତବ ଦୂର ବଂଶୀସ୍ୱନ
ତୁମରି ଆହ୍ୱାନ କିବା ଲଗାଇଲା ପ୍ରାଣେ ଉଚ୍ଚାଟନ !
ନିସ୍ତବ୍ଧ ମାଧବୀ ଜ୍ୟୋତ୍ସ୍ନା କୁହୁ ତାନ ପରି ଏ ମଧୁର
ବନ୍ଦୀ କଲା ମନ ପ୍ରାଣ ତୁମ ମୁଗ୍ଧ ବାଳିକା ବଧୂର !
ସେଦିନୁ ଆରମ୍ଭ ହେଲା ଅନଭିଜ୍ଞା ଦୀନା ବାଳିକାର,
ଲାଜ ନିବନ୍ଧନ ଭୁଲି ନିର୍ଜନ ନିଶୀଥ ଅଭିସାର !
ସେ ଦିନୁ ବାସର-ଗୃହ ଗନ୍ଧେ ପୁଷ୍ପେ କରି ସୁସଜ୍ଜିତ,
ଗୁହିଁଛି ବାସକ-ସଜ୍ଜା ତୁମ ପଥ ଉନ୍ନିଦ୍ର-ନିଶୀଥ !

ଅସିଲ ତ ଅଜ ! ଧନ୍ୟ ତୁମ ବଧୂ ! ଚପଳ ଦେବତା—
ନ ରହିବ ? ନୋହୁ ପଛେ !
ବୃଥା ପ୍ରାଣେ ଦେବ ନାହିଁ ବ୍ୟଥା !
ଜୀବନ ଅମୃତ ଲଗ୍ନ ବାନ୍ଧିବାର ବିଫଳ ପ୍ରୟାସ,
ନିରେଖି ତୁମରି ବଧୂ ଅପଣାକୁ କରେ ଉପହାସ !
ମୁକ୍ତ ଦ୍ୱାର ତୁମ ଲାଗି ! ଜୀବନ "ସୁଦୂର ସ୍ମୃତି"···ହାୟ !
ବିଦାୟ ବାସର-ଗୃହ ! ବନ୍ଧୁ, ପ୍ରିୟ, ବିଦାୟ ବିଦାୟ !

୫— ଅଗୁରୁ-ଚନ୍ଦନ ଗନ୍ଧେ ମନ୍ଦ ସମୀରଣେ ଯାଏ ମିଶି,
ବାସର ଉତ୍ସବ ଶେଷ ! ପାହି ଆସେ ପ୍ରୀତି-ଶୁଭ-ନିଶି !
ପ୍ରଣୟୀ ପବନେ ବାଜେ ଦୂରପଥ କରୁଣ ଆହ୍ୱାନ,
ଧୂପଶିଖା ସମ ତା'ର ପ୍ରାଣ-ସ୍ପନ୍ଦରେ ଗାନ !··· ··· ···

"ବାସର ଭବନ ବିଦାୟ ପ୍ରଣତି ଘେନ !
ମଳିନ ଦିଶିଲା ଉତ୍ସବ ଦୀପ ହେମ !
କିଶଳୟ ଶେଯେ ନୟନ ମୁଦନ୍ତି ବଧୂ,
ଅସ୍ତ ଚନ୍ଦ୍ର ଡାକି କହେ "ଗଲ ବଧୂ !"

ବକୁଳ ମଲ୍ଲୀ କେତକୀ କୁସୁମ ଦାମ,
କେଡ଼େ ଅଯତ୍ନେ ଧୂଳିରେ ଦିଶଇ ମ୍ଲାନ,
ଘର୍ମ ବିନ୍ଦୁ ଛୁଇଁଛି ନୟନ ପତା,
ସୁଦୂର ଅତୀତେ ବଧୂର ସ୍ମୃତିର ବ୍ୟଥା !

ଉଠ ନବ ବଧୂ ଉଷା ସମୀରଣ ଡାକେ,
ଡାକେ ଖଞ୍ଜନ ସୁଦୂର ମୁକୁଳ ଶାଖେ,

ମୁଗ୍ଧ ନୟନେ ଯହୁଁ ରହେ ନୀରବତା
ସବୁ ଅନନ୍ଦେ ବାଜେ କିବା ବ୍ୟର୍ଥତା ।
ଶୂନ୍ୟ ଜୀବନ ସ୍ବଳନ୍କୁ ପୁଣି କେ ଡାକେ ?
ବିଧୁର ସଜନୀ ଯେସନେ ଚକ୍ରବାକେ !
କରୁଣେ ଡାକଇ ଦୂରପଥ ଅବିରଳ
ସକଳ ତେଆଗି ଦୂର ପରବାସୀ ଚଳ ।
ଉଠ ବଧୂ ବୋଲି ଡାକିବାକୁ ଅଛ ଥରେ ?
ମଳିନ ପ୍ରଦୀପ ସମାନ ମରମେ ମରେଁ !
କହିବାର କଥା କଣ୍ଠେ ରହଇ ଲାଗି,
ଆପଣାର ଛାଏଁ ଶୀଥିଳ ପୀରତ-ରାଗି !
ନିମୀଳିତ ଅଖି, ସୁପ୍ତ କୁଶଳେ ବଧୂ,
ନ ଜାଣଇ କେବେ ଫେରିବ ଏ-ଭ୍ରମ ବଂଧୁ,
ଫେରିଲେ ଥିବଟି ଅଧରେ ହାସ୍ୟ ହେମ ?
"ବାସର ଭବନ ବିଦାୟ ପ୍ରଣିତ ଢେନ !"

[୧୯୩୪]



## ପଥ ଛାୟା

ମୁ ଚିର ପଥିକ, ଯାତ୍ରୀ ! ···ଏ ମରତେ ଦୂର ପରବାସୀ
ଜୀବନର ଅର୍ଦ୍ଧପଥେ କେତେ କଥା ମନେ ପଡ଼େ ଆସି !
ଅତୀତ ସହସ୍ର ସ୍ମୃତି ଲୁପ୍ତ, ଅର୍ଦ୍ଧ ଲୁପ୍ତ, ଜାଗରିତ,
ରଜନୀର ଶେଷ ଯାମେ ଶାନ୍ତ ନଭେ-ତାରକା-ଇଙ୍ଗିତ !
ପଥ ପାର୍ଶ୍ୱେ ଯେତେ ତରୁ ଏ ଯାତ୍ରୀରେ କଲେ ଛାୟା ଦାନ
ଅଛନ୍ତି କି ସକଳ ମନେ ? ନାହିଁ, ନାହିଁ, ସର୍ବେ ମ୍ରିୟମାଣ !

ସୁବିପୁଳ କାଳଗର୍ଭେ ସ୍ମୃତି ମାତ୍ର ଏ ଯାତ୍ରୀର ସାର,
ସଜଳ ଆଶ୍ରୟ ! ଘେନ ଏ ପାନ୍ଥର ଭକ୍ତି ନମସ୍କାର !
ସକଳ ବିସ୍ମୃତି ମଧ୍ୟେ ଜାଗ୍ରତ ଏକଇ ବନସ୍ପତି,
କୋଟି ସ୍ପୃହଣୀୟ ମଧ୍ୟେ ଯେତେକ ସେ ମୋ ଅମୃତ ସମ୍ପଦ !
ପ୍ରୀତି ନେଇ ଛାୟା ସମ ସ୍ୱପ୍ନମାଧୁରୀରେ ସୁଶୀତଳ,
ଯା ସ୍ମୃତି ସମ୍ବାଦେ ଶୂନ୍ୟ ପଥେ ଯାତ୍ରୀ ନୟନର ଜଳ ।
ଅନନ୍ତ ମାଧୁର୍ଯ୍ୟରସେ ସତ୍ତା ଯହିଁ ହେଲ ଅନୁଭବ,
ଦିବ୍ୟ ବନସ୍ପତି ସ୍ମୃତି ! ଏ ପାନ୍ଥର ପରମ ଗୌରବ !

---

[ ୧୯୩୫ ]

# ପାନ୍ଥଶାଳା

—୧—

ଲକ୍ଷ କୋଟି ପାନ୍ଥଶାଳା !···ଅର୍ଦ୍ଧ-ରାତ୍ରି ଛାୟାପଥ ସମ
କ୍ଷୁଧା ତୃଷା ହର ଆହା ପୁଷ୍ଟ କଲେ ଏ ଜୀବନ ମମ ।
ନାହିଁ ନାହିଁ ମନେ ଆଜ କାହିଁ କେତେ ପୁହାଇଛି ରାତି,
ଲଭିଛି ଜନନୀ-ସ୍ନେହ ଦୂରପଥ-ଆତ୍ମଭୋଳା-ଯାତ୍ରୀ !
ସକଳ ସ୍ମରଣେ ଆଜ ସ୍ପଷ୍ଟ ନେନେ ଅଶ୍ରୁ ହୁଏ ଜମା,
ଶତ-ପ୍ରୀତି-ଆଶା ମମ ! କ୍ଷିପ୍ର ଏ ପଥିକେ କର କ୍ଷମା !
ଏ ଯାତ୍ରୀର ଅନ୍ତସତ୍ତା ତବ ପ୍ରୀତି-ସ୍ମୃତି-ଇତିହାସ,
ବିସ୍ମୃତି ଯେସନେ ସତ୍ୟ ମାତ୍ର ନିତ୍ୟ ପରମ ପ୍ରକାଶ ।
ଦୀର୍ଘ ଶୂନ୍ୟ ଏହି ପଥେ ହୋଇଯାଏ ଆହା କେତେ ଭୁଲ,
କ୍ଷୁଦ୍ର ଏକ ପାନ୍ଥଶାଳା ମାତ୍ର ନିଃସ୍ୱ ସମ୍ପଦ ଅତୁଳ !

ଦୂରେ, ଦୂରେ ! ଯାର ଅଶ୍ରା ଲଭି ସତ୍ୱ ହେଲା ମୋ ପାଶୋର—
ବିସ୍ମୃତ ମୋ ଯାତ୍ରାପଥ, ଚନ୍ଦ୍ରେ ଯଥା ନିରେଖି ଚକୋର !
ଅମୂଲ୍ୟ ସମ୍ପଦ ପ୍ରୀତି ନେଲା କେବା ଅପହୃତ କରି,
ଅଦ୍ୟାଏ ଖୋଜେଁ ତାକୁ ଝୁରି ହୁଏଁ ସେ ଅଶ୍ରୁ ସ୍ମରି ।

—୨—

ଦୂରେ ସେହି ପାନ୍ଥଶାଳା !···ସହଯାତ୍ରୀ ଅଛ ତାକୁ ଦେଖି ?
ସକଳ ମାଧୁର୍ଯ୍ୟ ଖଣି ଶୋଭା ତାର ଜୁହେଁ କାହିଁ ଲେଖି !
ନନ୍ଦନ ସୁରଭି ସେଠା, ଉପବନ କୌମୁଦୀ ପ୍ଳାବିତ,
ସ୍ପର୍ଶେ ପଡ଼େ ନାହିଁ ଧରା ଚିତ୍ତ ଖାଲି କରେ ପୁଲକିତ !
ଶ୍ରାନ୍ତ କ୍ଳାନ୍ତ ପାନ୍ଥ ଯେତେ ଭିକ୍ଷା କଲେ ରଜନୀ ଆଶ୍ରୟ,
ଧନ୍ୟ ହେଲେ, ହେଲେ ପୁତ ଲଭି ସେ ଜନନୀ ବରାଭୟ !
ଅମୃତ ଆଶ୍ରୟ ସ୍ମୃତି ! ଶୂନ୍ୟ ମମ ଜୀବନ ସମୃଦ୍ଧି !
ସ୍ମୃତିରେ ସରଳ ପଥ ବସିଲେକ ଥରେ ନେଏ ବୁଜି ।
ଏତ ନ ପାରଇ ବନ୍ଧୁ ଦୂର ଶୂନ୍ୟ ପଥଯାତ୍ରା ନିଶା,
ସୁଦୂର ଅଧ୍ୱାନେ ଜାଗେ ଭଗ୍ନ ପ୍ରାଣେ ଅଦମ୍ୟ ଜିଗୀଷା,
ବାହାର ମଡ଼ଇଁ ଘରୁ ! କ୍ଷଣେକ ନ ଗଣି ଯାତ୍ରା କ୍ଲେଶ,
କହିବ କେ ସହଯାତ୍ରୀ ଏ ଯାତ୍ରାର କାହିଁ ହେବ ଶେଷ ?
ସକଳ ମୋ ଅନୁଭୂତ ବ୍ୟଥା ସିକ୍ତ ସ୍ମୃତି ଅନ୍ଧକାରେ,
ଦୂର-ପାନ୍ଥ-ଶାଳା-ସ୍ମୃତି କୌମୁଦୀ-ପ୍ଳାବନ ପାରାବାରେ !



## ଯଶାକାଙ୍କ୍ଷୀ

୧—ଅସ୍ପଷ୍ଟ ସେ ସନ୍ଧ୍ୟାଲୋକେ ପୁଚ୍ଛଇ ରହସି
ଉତ୍କଣ୍ଠା-ଆବେଗେ ପ୍ରିୟା…"ତୁଚ୍ଛାଟାରେ ବସି
ଅନ୍ଧକାର ଗୃହ କୋଣେ ରଚୁଅଛ ଛନ୍ଦ—
ମୂକବଧୂ ସମ ଅନ୍ଧ ! କି ଅବା ଆନନ୍ଦ
ଜାଣୁଥିବ ଅବା ଆପେ, ଆନ କେହି ଜଣେ
ନ ଦେଖିଲେ ଯାହା ପ୍ରଷ୍ଟାଭର ଅକାରଣେ ।
ନ ଦଣେ ବସିଛୁ ଆଜ ରାଜ ଦରବାର ?
କବି ଗୁଣୀ ଜ୍ଞାନୀ ସମୁଚିତ ପୁରସ୍କାର—
ଲଭି ଫେରୁଛନ୍ତି, ସୁଖେ ମୁଖ ହସ ହସ,
ଅସ୍ଥିର ଜନତା ଗାଏ କୋଟିମୁଖେ ଯଶ !
ନାହିଁ କି ପୌରୁଷ ତଳେ ? ଖାଇଲଣି ପୋକ ?
ବୁଢି ରସାତଳଗାମୀ ପାଦେ ପାଦ ଯୋଡ଼ି !
ଯେତେ ସବୁ ଜବାମତ ମୋହର ଉପରେ;
ପରଖି ଆସିବ ଭାଗ୍ୟ ଯାଅ ତହିଁ ଥରେ !"

୨—ଇତସ୍ତତ କରି କବି ଭାଷଇ ଉତ୍ତର—
ଅପରୂପ ବ୍ୟଙ୍ଗ ହାସେ କମ୍ପିତ ଅଧର !
"ଯିବି ଦରବାରେ ? ମିଳିବଟି ପୁରସ୍କାର ?
ମିଳିବ କୁଣ୍ଡଳ ଯୋଡ଼ା ? ଅବା ରତ୍ନହାର—
ଲମ୍ବାଇବା ଜମ୍ବୁକଣ୍ଠ ? ବଲୋଲ ରସନା ?
ଜାଣିଛ କି ଅଛି ତହିଁ କେତେ ସମ୍ଭାବନା ?
ବଧିର ଯେବେ ଗୋ କାନ ଶୁଷ୍କରାଜ ପ୍ରାଣ
ରହିବଟି ତୁମର ଏ ଆଶା ଅଭିମାନ ?

ତା ତହୁଁ ଗୌରବ ମୋର ଜୀର୍ଣ୍ଣ ଏ କୁଟୀର,
ଅଳପ ଆଦର, ପ୍ରୀତି, ତୁମ ନେଣ ନୀର !
ଦେଖିନାହିଁ ଦବାନଳି ଶ୍ରମ-ଜୀବୀ-ଶତ—
ଅନାହାରେ ତାଡ଼ି ଛିନ୍ନ ବିଶାଳ ପର୍ବତ
ରାଜସୌଧ ଲାଗି ? କିଏ ଶୁଣେ ସେ କ୍ରନ୍ଦନ ?
ବିସ୍ମୃତିରେ ଲୟ ହେଉ ମୋ ଗୀତି ତେସନ ।

[ ୧୯୩୬ ]



## କବିପ୍ରିୟା ପ୍ରତି—

୧—ରଖିନା ସ୍ମାରକ କିଛି ଆନ କବିପର ?
ପ୍ରୀତି ନିଦର୍ଶନ କିଛି ଦେଇନି ସୁନ୍ଦର ?
ଚଟୁଳ ଗୁଞ୍ଜରିବାନେ ହରିନାହିଁ ମନ ?
ତରଳ ପ୍ରୀତିରେ ସ୍ନିଗ୍ଧ କରିନି ଜୀବନ ?
  ଉଦାନ ଦେଇନାହିଁ ଆଦର ସେବାର ?
କ୍ଷୁବ୍ଧ ରମଣୀହୃଦ୍ ନିତ୍ୟ କରେ ହାହାକାର ?
ସନ୍ଦେହ ଉପୁଜେ ମନେ ? ପ୍ରୀତି-ଅବିଶ୍ୱାସ—
ସକଳ ମାଧୁର୍ଯ୍ୟ ତବ କରିଅଛି ଗ୍ରାସ ?
ଶିଖାଇନି ମୋତେ କେହି ପୀରତି ବେଭାର,
ତେଣୁ ମୋ ପୀରତି ଠାଣି ଟଣା ପରକାର ।
ତରଳ ଉଚ୍ଛଳ ପ୍ରୀତି ନାହିଁ ମୋତେ ଜଣା,
ହସ୍ତଧୃତ କାବ୍ୟସମ କରିବ ରଚନା

ରାଷ୍ଟ୍ର-ଗୀତ ? ହେବ ପ୍ରୀତ-ସନ୍ଦେହ ମୋମନେ ?
ଅନ ଗୀତ-ଅଦରଣେ ହେବ ମୋ ମରଣ ।

୨—ପ୍ରଖର ଦହନେ ତୀକ୍ଷ୍ଣ ରବିକର ତାପେ,
ଅର୍ଦ୍ଧମୃତ, କ୍ଷୁଧାତୁର, କିବା ଅଭିଶାପେ—
କରନ୍ତି ନିଷ୍ଫଳାଘାତ ରୁକ୍ଷ ପରବତେ
ଦୁଃଖୀ ଶ୍ରମଜୀବୀ ଅହା ! ଦେଖ ଗୋ ନିରତେ !
ତାଙ୍କର ଶୋଣିତ ଅସ୍ଥିମେଦମାଂସପରେ
ଗଢ଼ି ଉଠେ ରାଜସୌଧ* ଶୋଭ ଦମ୍ଭଭରେ !
ଭିତ୍ତିରେ ପ୍ରୋଥିତ ଯଥା ଜୀର୍ଣ୍ଣ ହାହାକାର !
ତେମନେ ପୀରତ ମୋର ଲେଖକ-ପ୍ରସାର !

ଅଛି ଅନବଦ୍ୟ-ଅଙ୍ଗେ ଶ୍ରମିକ ଶକତ ?
ଅଛି ସେ ନୈପୁଣ୍ୟ ଦମ୍ଭ ଅଛି ଦୃଢ଼ମତ ?
ଭାଙ୍ଗିଲେ ଅଚଳ ମେରୁ ପାରିବ ଗୋ ଦେଖି
ବ୍ୟଥାର ଶୋଣିତେ ପ୍ରୀତ ହୋଇଅଛି ଗୋ ଲେଖି ।
ଲକ୍ଷ କୋଟି ନିଃଶ୍ୱାସ ତହିଁ ସ୍ତୂପୀକୃତ
ସେ ତୁମର ପ୍ରୀତ ! କର ଅଶ୍ରୁ ପରିପ୍ଲୁତ !

[୧୯୩୫]



* ସେ ସମୟରେ ନିର୍ମିତ ହେଉଥିବା ଏକ ସୁବିଶାଳ ରାଜହର୍ମ୍ୟକୁ ଉପଲକ୍ଷ କରା ହୋଇଅଛି । ସେ କରୁଣ ଦୃଶ୍ୟ ଲେଖକପତ୍ନୀଙ୍କର ବ୍ୟକ୍ତିଗତ ଅନୁଭୂତିରେ ମଧ୍ୟ ଆସିଅଛି ।

## ପଙ୍ଗୁର ଆରତି

ଦିବା ଅବସାନେ ଅସ୍ତ ଅରୁଣ ରାଗେ,
ବ୍ୟଥିତ ପଙ୍ଗୁ କି ଗାଇବ ଅନୁରାଗେ ?
ଗମ୍ଭୀରେ ଗାଏ ଧନ୍ୟ କରିଛ
ଅଙ୍ଗ ପଙ୍ଗୁ କରି !
ଧନ୍ୟ ହରି ହେ ହରି !
ନାରଣ ଭୂମିରେ ସହଜେ ଦେଇଛ ଧରା,
ମଧୁର ବେଣୁରେ ଡାକଛ ସୋହାଗେ ପରା,
ଜୀବନର ରସେ ନେଇଛତ ହାତଧରି,
ଧନ୍ୟ ହରି ହେ ହରି ।
ମୂକ ଏ କଣ୍ଠ ନେଇ ବେଦନାର ଭାଷା,
ଅଶ୍ରୁ ପୂଜାରେ ଦେଇ ଉତ୍ସବ ଆଶା,
ଗିରି ଲଙ୍ଘନ ଦେଇଛ ସହଜ କରି
ଧନ୍ୟ ହରି ହେ ହରି ।
ଗଳିତ ଅଙ୍ଗ ତଳେ ମୋ ଶୋଚନା ନାହିଁ,
ସକଳ ଯେ ପ୍ରଭୁ ତବ ଆରାଧନା ପାଇଁ !
ପଙ୍ଗୁ ଅରତ ଯେବେ ଆନ ଜନ ପରି,
ଧନ୍ୟ ହରି ହେ ହରି ।
ଭର ନିର୍ଭର ! ଅଶ୍ରୁର ବାନାମୟ
ଅପାର ଶାନ୍ତି ପୁଣି ତବ ବରାଭୟ,
ଏ ଦୀନ ପରାଣେ ଦେଇଛତ ପ୍ରିୟ ହରି,
ଧନ୍ୟ ହରି ହେ ହରି ।
ଜୟ ଜୟ ପ୍ରିୟ ପଙ୍ଗୁର ଭଗବାନ,
ଗୌରବ ମୋର ବନ୍ଧୁ ତୁମରି ଧ୍ୟାନ,

ସ୍ପର୍ଶେ ସେହି ମୁଖ ପାଣ୍ଡୁ ଯାଏ ବାଷ୍ପବର୍ଷୀ,
ଧନ୍ୟ ହରି ହେ ହରି ।

ଜୀବନ ଦୈନ୍ୟେ ତୁମେ ହେ ପରମଧନ
ଅମା ଅନ୍ଧାରେ ସହଜ ମୋ ଦରଶନ ।
ଦେଇଛତ ଧସ୍ର ଅଞ୍ଚଳ ନିଷ୍ପସରି,
ଧନ୍ୟ ହରି ହେ ହରି ।

ନାହିଁ ଯେ ଦୈନ୍ୟ ନାହିଁ କିଛି ଅନୁନୟ
ତୁମ ସଙ୍ଗୀତ ଶିଖାଇ ହରିଛ ଭୟ ।
ତୁମରି ଇଚ୍ଛା ସହଜ ଲଭ୍ୟ କରି
ପଙ୍ଗୁରେ ଆଜ ଧନ୍ୟ କରିଛ ହରି !

ନିଃସ୍ୱ ଜୀବନ କଲ ଗୌରବମୟ,
ଜଳୁଛି ମୋ କ୍ଷୀଣ ପ୍ରଦୀପ ଜୟ ହେ ଜୟ !
ଜୀବନର ବୀଣା ଉଠେ ଜଠରେ ଥରି,
ଧନ୍ୟ ହରି ହେ ହରି !

ଅସ୍ତ ସୂର୍ଯ୍ୟ ନାହିଁ ଅନ୍ତର ମ୍ଳାନ
ଅଶ୍ରୁସାଗରେ ଜାଗେ ଅନ୍ଧାରେ
କୌମୁଦୀ ସୁଧାବାଣୀ ।
ଧୌତ କ୍ଷତ ପରାଣ ସେ ଯାଏ ଭରି,
ଧନ୍ୟ ହରି ହେ ହରି ।

ପଙ୍ଗୁ ସେ ଅଜ ନବ ଅଭିସାର ପଥେ
ବିଭୂଷିତ ତନୁ ତୁମ ଇଙ୍ଗିତ ମତେ ।
ପୀରତ ପୂଜାର ହେମ ଦୀପଗୋଟି ଧରି,
ପଙ୍ଗୁର ବୀଣା ନିର୍ଭୟେ ଗାଏ—
ଧନ୍ୟ ହରି ହେ ହରି ।

## ବିଯ୍ୟେତ୍ରିଶ

—୧—

ରୂପତଳେ କବୀ ସତ୍ୟ ରଖିଛ ଲୁଚାଇ,
ନ ସରେ ରୂପସୀ ଦେବୀ ନଶ୍ୱ ଗୀତେ ତାଇ;
ପ୍ରଶାନ୍ତ ଶାରଦ ତାର ସେ ରୂପ ପ୍ରଭବ,
ମଙ୍ଗଳର ଆଦରଣ ବହୁଆଣେ କବୀ !

—୨—

ଧନ୍ୟ ଯେ ସୃଜିଛୁ ରୂପ ପ୍ରୀତି ମାଦକତା,
ଲଭିଛୁ ଯେ ରୂପାଲୋକେ ଜୀବନର ସତ୍ତା !
ନୟନ ଅରୁଣୀ ଲୋକେ ମରିଛୁ ଯେ ଥରେ,
ଧନ୍ୟ ଯେ ବନ୍ଧୁଛି ପ୍ରୀତି କ୍ଷତ ମରମରେ !

—୩—

ଥରେ ହେଲେ ଚିଦାକାଶେ ରୂପଛାୟାପାତ
କୌମୁଦୀ ପ୍ଲାବନ କେବେ ଅରୁଣ-ପ୍ରଭାତ !
ଶୂନ୍ୟ ପ୍ରାଣ ବିପିନରେ ମୁରଲୀ ନିନାଦ,
ସତ୍ତା ଯାଏ ହଜି କାହିଁ ଲୟ ଅବସାଦ !

—୪—

କି ମାୟା ଏ ଦୀନପ୍ରାଣେ ରଚିଲ ରୂପସି !
କି ଅମୃତ ଢାଳିଦେଲ ମୋ ବଳ ନ କସି,
ଭୁଲେଁ କାହିଁ ସମ୍ପାଦକ ପରମ ସମ୍ପଦ,
ନିତ୍ୟ ପ୍ରାଣାରାମ କାବ୍ୟ-ଅମୃତ ସୁଖଦ !

---

* ଇତାଲୀୟ କବି ଦାନ୍ତେଙ୍କର ପ୍ରଣୟିନୀ ।

—୪—

ରୂପର ଗୌରବ ଅବା ଗାଇଯିବ ଗୀତେ,
ଅମୃତ ଆଭାସ ଅହା ରହିଗଲ ଚିତ୍ତେ !
ରହିଯିବ ଗନ୍ଧ-ବର୍ଣ୍ଣେ ? ଉପହାସ କଥା ।
କେ ବୁଝିବ କବି-ଶିଳ୍ପୀ-ଅନ୍ତର ଦୀନତା ?

—୫—

ରୂପ ଆଦରଣ ପାଶେ ମରେ ଲାଜେ ବାଣୀ,
ମରଣିକୁ ଧନ୍ୟକରେ ସ୍ନିଗ୍ଧ ସେ ଗୃହିଣୀ !
ପୀରତି-ଭାରତୀ-ପଦାଙ୍କର ମାଦକତା
ଅରଜନି ବିଶ୍ୱକଳା ତୁଲା ସାର୍ଥକତା ।

—୬—

ଖେଳ ଲୋଳ ନୟନର ମାଧୁର୍ଯ୍ୟ ପ୍ରକାଶ
ସୃଷ୍ଟିର ଅନାଦ୍ୟ ଉତ୍ସ ଲୀଳା ପଦ୍ମହାସ;
ଅତୃପ୍ତ ପରାଣେ ରହି ରହି ଦବାନିଶି
ଭାଳେଁ ପ୍ରୀତି ନେହାଲେକେ ଯାଅନ୍ତି ମୁଁ ମିଶି ।

—୭—

ହେ ଅରୂପ ଲାସ୍ୟବାଳା ଯହିଁ ଯାଅ ଚଳି,
ଚରଣ କମଳ ଯେଉଁ ପଥଯାଏ ଦଳି,
ସେ ପଥେ ଫୁଟନ୍ତି ହେଲେ କ୍ଷୁଦ୍ର ଘାସଫୁଲ !
ଅମୃତ ସମ୍ପଦ ସେ ମୋ ସ୍ୱପନ ଅତୁଳ ।

—୮—

ହସିବେ ଜଗତେ କହ ରୂପ ହଳାହଳ,
ପ୍ରୀତି କ୍ଷୀଣଜୀବୀ ମୃତ୍ୟୁ ବଡ଼ଶୀ କବଳ !

ସାର କରି ଜୀବନରେ କଳଙ୍କ ପସରା,
ଦୂରୁଁ ଦୂରେ ଅପସରେଁ ଦଏ ନାହିଁ ଧରା !

—୧୦—

ଦୂରେ ଦୂରେ ବହୁଦୂରେ ଥାଅ ରୂପରାଣି
ଦରିଦ୍ର ପୂଜାରୀ-ସତ୍ତା ନ ପାରେ ଗୋ ଜାଣି,
ଦିବା ନିଶି ପୂଜା ଅର୍ଘ୍ୟ ପ୍ରୀତି ଅଶ୍ରୁଜଳ,
ଜୀବନ ନନ୍ଦନ-ହେଉ ନିତ୍ୟ ମୋ ସମ୍ବଳ !

—୧୧—

ଧନ୍ୟ ହେଉ ଏ ଜୀବନ ସେ ସ୍ମୃତି ସୌରଭେ
ଅଶ୍ରୁ ତୁମେ ଜୀବନ-କ୍ରୂର-ଉପଦ୍ରବେ,
ସେ ରୂପେ ଜୀବନ ସତ୍ୟ ସୁନ୍ଦର ସରଳ,
ସ୍ମୃତି ହୁଏ ଅଲକ୍ଷିତେ ଜୀବନ ଗରଳ !

—୧୨—

ଜୀବନେ ଯା ସ୍ପୃହଣୀୟ ମରଣେ ପୂର୍ଣ୍ଣତା;
ପରାଣ ପୀଡ଼ଇ କାହିଁ ? ବ୍ୟବଧାନ ବ୍ୟଥା ?
ରୂପ କଷଟିରେ ପ୍ରାଣ ପରଖିଲେ ଥରେ
ଅମୃତର ମାଦକତା ସ୍ଫୁରେ ମରମରେ !

—୧୩—

ଅନଳେ ସ୍ଫୁରଇ ତେଣୁ ସୁରଭି ନିଃଶ୍ୱାସ
ବସନ୍ତ ସନ୍ଧ୍ୟାରେ ନେଇ-ମନ୍ଦାର-ପ୍ରକାଶ
ଶାରଦ ଶେଫାଳୀ ଛଳେ ତରୁଣ ସଙ୍ଗୀତ
ରୂପସୃଷ୍ଟି ଗାଏ ତବ ଅନାମୟ ଗୀତ ।

— ୧୪ —

ଏ ସୃଷ୍ଟି ପ୍ରଚ୍ଛନ୍ନ ସତ୍ୟ ଏକରୂପ ଶିଖା
ଶିଖାଇ ସରଳ କରେ ଶତ ପ୍ରହେଳିକା;
ସସୀମ ସେ ରୂପ ତବ ଅଗୋ ରୂପରାଣି ?
ବର୍ଣ୍ଣ ଦର୍ଶେ କି ଝରଏ ଅସୀମର ବାଣୀ !

— ୧୫ —

ରୂପ ପ୍ରୀତି ଜୀବନର ପରମ-ଗୌରବ,
ଜୀବନ ମରୁରେ ରଚେ ନିତ୍ୟ ମହୋତ୍ସବ !
ବ୍ୟବଧାନେ ଲୁପ୍ତ ହୁଏ ଦେଶ କାଳ ସୀମା,
ଶିଖାଇ ଗୋ ଧନ୍ୟ କଲ ପୀରତି ମହିମା ।

— ୧୬ —

ଦୂରେ ଦୂରେ ଥାଅ ପଛେ ନବ ବଳାହକ
ସ୍ମରି ଚିର ତୃପ୍ତ ରୂପ ପିପାସୁ ଚାତକ ।
ରୂପ ଅଭିମାନ ପ୍ରାଣେ ତେଜିଲେ ଅବଜ୍ଞା
ନ ଭୁଲିବ ରୂପସୀ ଗୋ ଦୀନ କବି ପ୍ରଜ୍ଞା

— ୧୭ —

ଏ ସୃଷ୍ଟି ମଙ୍ଗଳ ଲାଗି ରୂପ ଅଭିସାର
ଅଭିମାନେ ଅଗ୍ନିଦାହ ନିତ୍ୟ ବ୍ୟଭିଚାର !
ସେ ସମ୍ପଦ ନ ଦହିବ ଅଜ କୀଟ ପ୍ରାୟ
ଏ ଜୀବନ ଲାଗି ପ୍ରିୟ ନେଉଛି ବିଦାୟ ।



# ଯାଚଣା

—୧—

ସେ ନୟନ ଚନ୍ଦ୍ରାଲୋକେ ବସିଲେ ଜୀବନ ଧନ୍ୟ ମୋର !
ଭୁଲି ଅବସାଦ ବ୍ୟାଧି ପ୍ରାଣ କ୍ଷଣେ ଅତୀତ କିଶୋର !
ବଡ଼ ସ୍ନିଗ୍ଧ ସେ କିରଣ ! ନାହିଁ ତହିଁ ବାସନାର ଦାହ,
ମାଲତୀ-କୁସୁମ-ବାସ ଅବା ନବସ୍ନିଗ୍ଧ ବାରିବାହ !
ସୁନ୍ଦର କରିଛ ମୋର ଜୀର୍ଣ୍ଣ ସୃଷ୍ଟି ! ଭୁଲି ଅବସାଦ !
ତୁମରି ନିଶ୍ୱାସ ପ୍ରିୟ ବକ୍ଷେ ବାଜେ ! ନୁହେଁ ସେ ପ୍ରମାଦ !
ମରଣ ଏ କାଳେ ଯେବେ ଆସିବ ଗୋ କର ତାର ଧରି—
ପରମ ସୁହୃଦ ସମ କହିବି ମୁଁ ତା କାନେ ସୁନ୍ଦର—
ସୌନ୍ଦର୍ଯ୍ୟ ପରମ ସତ୍ୟ ! ସତ୍ୟ ସିନା ପରମ ସୁନ୍ଦର !
ପୀରିତି ଅଦର୍ଶେ ଅହା ପାଇ ଧନ୍ୟ ମାନବ ଅମର !
ବାଣୀ ହୁଏ ପରାହତ ! ଲଭି ତବ ପୁଣ୍ୟ ଅନୁଭୂତି
ଅପସରି ଯିବ ଦୂରେ ?....ସ୍ମୃତି ହେଉ ଜୀବନ ବିଭୂତି !
ନୀରବ ଜ୍ୟୋତ୍ସ୍ନାରେ ତବ ଅଭିସାର ସ୍ମୃତିଟି ଅତୁଳ !
ରଖିବ ସମ୍ବାଦ ସଖି ଦେବ କି ସେ ଶ୍ରବଣର ଫୁଲ ?

—୨—

ସୁଦୂର ଦିଗନ୍ତେ ସ୍ୱଚ୍ଛ ନୀରବକ୍ଷେ ଜ୍ୟୋତ୍ସ୍ନା ! ଢଳ ଢଳ
ନାଃ ସ୍ୱ ଏ ଅନ୍ତରେ ମମ ତବ ପ୍ରୀତି ତେସନେ ଅମଳ !
ନୟନ ମାଧୁର୍ଯ୍ୟ ତବ ଅନ୍ତର ତମିରେ ରଚେ ରାସ,
ଅନେ କିବା ମାଦକତା ! ହେଉନାହିଁ ତହିଁ କି ବିଶ୍ୱାସ ?

ସଂଜ୍ଞା ଅପହୃତ ସମ ଜ୍ଞାନର ଗରିମା ମରେ ଲାଜେ—
ପାଶେ ଉଭା ହେଲେ ଥରେ ଶାରଦ-ଅରୁଣ-ସ୍ନିଗ୍ଧ ସାଜେ !
ସେ କାଳେ ଚକୋର ଉଠେ ଡାକି ଅହା ଶୂନ୍ୟ ସେ ପୁଳିନୁ
"ସୁନ୍ଦର ସୁନ୍ଦରତର କେସନେ ସହୁରେ ଦନ୍ତୁ ଦନ୍ତୁ ?"
ଫେରାଇ ନିଅ ସେ ଦୃଷ୍ଟି ! ବାଜେ ବକ୍ଷେ ରୁଦ୍ଧ ଦୀର୍ଘଶ୍ୱାସ !
ସେ ନୁହେଁ ବେଦନା ସହି ସେ ଯେ ପ୍ରୀତି-କୁସୁମ ନିଶ୍ୱାସ !
ପିଇଛି ଗୋ ରୂପ ସୁଧା ସକଳ ମୋ ଜୀବନଟା ଧରି
କାହିଁ ତେବେ ଅବସାଦ ? କାହିଁ ତୃପ୍ତି ପରାଣେ ସୁନ୍ଦରି ?
ସ୍ୱପ୍ନ ପରତୀତ ସତ୍ୟ ! ଶତ ଦୈନ୍ୟ ଲାଗେ ଅବାସ୍ତବ !
ବଦାନ୍ୟ ଇଙ୍ଗିତ ନେଇ ତହିଁ ମୋର ଅପାର ଉତ୍ସବ !
ଏ ସୃଷ୍ଟି-ସୌନ୍ଦର୍ଯ୍ୟବୋଧ ସେ ଯୁଗଳ ନୟନର ଶିକ୍ଷା
କୁସୁମ ସମ୍ପଦ ସ୍ମୃତି ଦିଅଁ ମୋରେ ପ୍ରୀତି-ପ୍ରହେଳିକା !

—୩—

ଆସିବ ଶ୍ରାବଣ ରାତି ! କହିବ ଗୋ ନୟନର ଜଳ ?
ମଳିନ ଶ୍ରବଣ ଫୁଲ ହେବ ସହି ମୋ ଯାତ୍ରା ସମ୍ବଳ !
ଦୁଇଦିନ ଅନ୍ଧକାରେ ଆକୁଳ ପରାଣ ପଥହରା
ସକଳ ତାରୁଣ୍ୟ ମୋହ ନିଗାଡ଼ି ପିଇବ କ୍ରୂର ଜରା,
ଶୂନ୍ୟ ସେ ନିର୍ଜନ ପଥେ ନଥିବେ ଗୋ କେହି ସାଥି ସାହା,
ଅବଶ ଏ ଦେହ ମନ ରୁହିଁ ଥରେ କହିବାକୁ ଅହା !
ଅପୂର୍ଣ୍ଣ ଜୀବନେ ସହୁ ଅପୂର୍ଣ୍ଣ ଗୋ ରହେ ଶତ ଆଶା,
ବାଷ୍ପ ବଜଡ଼ିତ କଣ୍ଠ ପାଏ ନାହିଁ ଖୋଜି ବ୍ୟଥା-ଭାଷା ।
ସକଳ ଅସାର ମେଳେ ସଜନରେ ସାର ପ୍ରୀତି-ସ୍ମୃତି,
ସହସ୍ର ଜୀବନମେଳେ ସାର କ୍ଷଣ-ରୂପ-ଅନୁଭୂତି ।

ନିମେଷ ମିଳନେ କହେ ଉଦାସ ନୟନ ଯେତେ ବାଣୀ
ତା ତୁଳେ ଅମୂଲ୍ୟ କବା ଜାଣେ ନାହିଁ ଅଟେ ପ୍ରୀତି ଋଣି ।
ମଉଳ ଯାଉ ସେ ଫୁଲ ମରବାର ନୁହେ ତାର ବାସ,
ଘନ ଅନ୍ଧକାରେ ପ୍ରୀତି-ସ୍ମୃତି ସଦା ବିଜୁଳି ପ୍ରକାଶ ।



## ରୂପାଭିମାନିନୀ

୧—ପ୍ରଖର-ଉତ୍ତପ୍ତ-ଦବା ସମ ମମ ଉଦ୍‌ଭ୍ରାନ୍ତ ଯୌବନ
ଲୁହୁ ଲୟମାନ ଆହା ବାର୍ଦ୍ଧକ୍ୟର ଅମା ଅନ୍ଧକାରେ
ସବୁ ଅସିଲାଣି ପ୍ରଭୁ ଚିର-ମୁଗଧ-କୁସୁମ ଚୟନ
ଅଶ୍ରୟ ସମ୍ବଳହୀନ ନାଶ୍ରି ପ୍ରାଣି ପୁର୍ଣ୍ଣ ହାହାକାରେ !
ଜୀବନ ପ୍ରଦୀପ କମେ କ୍ଷୀଣ ମ୍ଳାନ ! ଦଶେ ପଥପ୍ରାନ୍ତ !
ମୁକ୍ତିର ସନ୍ଧାନ ତେବେ ନ ମିଳଇ ଭବ ପାରାବାରେ
ନଳିନ ଷଟ୍‌ପଦସମ ସ୍ୱପ୍ନେ ଲୋକ ଚିର ଅବଶ୍ରାନ୍ତ
ମତ୍ତ ହେଲି ନିଶି ଦବା ସାରକର ଆତ୍ମ ପ୍ରଶଂସାରେ;
ସ୍ୱାଧୀନତା ମୁକ୍ତି ଭାଳି ନିଜେ ଚଳି ପିନ୍ଧାଇଲି ଡୋର
ଜୀବନ ସରଳ ପଥ କରିଛୁ ଜଟିଳ ଇଚ୍ଛା ମତେ,
ହସୁଥିଲ ମୌନେ-ପ୍ରଭୁ ? ଯେବେ ଚିତ୍ତ ଚମଲ କଣୋଗ୍ରି—
ମଙ୍ଗଳ-ବିଧାନ ଦୁଉ ଗଲଲକୁ ବରଲି ନିରତେ ?
ତୁମ କରୁ ମୁକ୍ତ କରି ହେଲି ଯୁବ୍‌ଧ ଅମୃତ ବଞ୍ଚିତା
ଅତ୍ମ ସମର୍ପଣ ସୁଖେ ମଗ୍ନ ବିଶ୍ୱ ! ପ୍ରାଣେ ମୋର ଚିତା ।

୨—ମନେ ପଡ଼େ ପଥ ପ୍ରାନ୍ତେ, ସେ ଦନ ମୁଁ ନବୀନା କଣୋସ୍ତି,
ମୋ ଯୌବନ ଉପବନ କୌମୁଦୀ-ଐଶ୍ୱର୍ଯ୍ୟେ ଗଲ ଭରି,

ଧନ୍ୟ ଯେବେ ସମୀରଣ ମୋ ଅଙ୍ଗ ସୌରଭ କର ହେର,
ଅସିଲ ସେ କମ୍ପ୍ର ପଦେ ସଙ୍କୁଚିତ ଭିକ୍ଷା ପାତ୍ର ଧରି—
ମୋ ଐଶ୍ୱର ବେଦୀ ପ୍ରାନ୍ତେ ! ସଶଙ୍କିତ କ୍ଷୀଣ ବଂଶୀସ୍ୱନ !
ଅଙ୍କିତ ପଦ୍ମବଣେ ମମ ସ୍ଫୂର୍ତ୍ତି ତାର ମଳିନ ଗ୍ଲହାଣୀ,
ଅଜ୍ଞ ସ୍ପୃହା ପଡ଼େ ମନେ ଅବଜ୍ଞାରେ ପୁଚ୍ଛିଲି କାରଣ
ଫେରାଇ ଦେଲି ମୁଁ ଶେଷେ କ୍ରୂର ଉପହାସ ବାଣୀ ହାଣି !
"କୁଶଳେ ଐଶ୍ୱର୍ଯ୍ୟମୟୀ ରହ ସଦା ! ଯେନ ନମସ୍କାରେ !
ଶୂନ୍ୟ ମୋର ସିଂହାସନ ରହୁ !" କହି ଘେନିଲି ମେଲାଣି,
ଦଳିଲି ତା ବରମାଲ୍ୟ ଦୃପ୍ତପଦେ ! ଅଜ୍ଞ ଅନ୍ଧକାରେ—
ସୁଲଭ ହେବ କି ଅଉ ଦିବସର ସେ ଅମୂଲ୍ୟ ମଣି ?
ଆସିବ କି ତବ ଭିକ୍ଷୁ ? କାନ୍ଦେ ନିତି ମୋ କୁରସ୍ତ ପ୍ରାଣ !
ଦହେ ଆତ୍ମପ୍ରବଞ୍ଚନା, ଅତୀତ ଯୌବନ ଅଭିମାନ !

୩— ଖେଳିଛ ଖେଳିଛ ମୋହେ ! ତୁମ କରେ ଦେଇ ନାହିଁ ଧରା
ତୁମର ଅସ୍ତିତ୍ୱ ପ୍ରଶ୍ନ ଯେବେ ହେଲେ କରିନି ସ୍ୱୀକାର,
ଚପଳତା ଲାଗି ଦଣ୍ଡ ନିଷ୍ଠୁର ଜୀବନ ସ୍ୱାମୀ ପରା;
ଏ ଶୂନ୍ୟ ମନ୍ଦିରେ ମମ ଘନଘନ କୁଳିଶ ପ୍ରହାର ?
ଆତ୍ମ ପରିତୃପ୍ତି ଲାଗି ବାସନା ବାଡ଼ବ ଦେଲି ଜାଳି,
ପତଙ୍ଗ ସମାନ ଝିମ୍ପି ଆତ୍ମଦାହ ହେଲା ସିନା ସାର ?
ଅନେ ଉପହାସ କରି ନିଜ ମୁଖେ ସିନା ଦେଲି କାଳି ?
ସଂକୀର୍ଣ୍ଣ ମୋ ମାନଦଣ୍ଡେ ତୁମ ବିଧି କଲି ମୁଁ ବିଚାର,
ନିଭିନି ବାସନା-ଦାହ ଶମିନାହିଁ ପ୍ରାଣ ହାହାକାର,
ବକ୍ଷବନ୍ଧ୍ୟା ଜନନୀ ଶୂନ୍ୟ ଅବଶ୍ରାନ୍ତ ହୃଦରେ ପ୍ରାଣପୁରେ !

ସୃଷ୍ଟିର ଭଗିନୀ ଛାୟା ଦମ୍ଭେ ମୋର କରନ୍ତି ଧିକ୍କାର;
କ୍ଷୁଣ୍ଣ ମୋ ନାରୀତ୍ୱ ସଦା ମୁକ୍ତି ଲାଗି ଖୁଜୁଁଛି ସୁଦୂରେ !
ଅଉ ଶୁଣାହେବ କିବା ହଜିଗଲା ପ୍ରୀତି ବଂଶୀସ୍ୱନ ?
ମୁକୁଳିତ ହେବ ସତେ ଶୂନ୍ୟ ଏ ଜୀବନ କୁଞ୍ଜବନ ?



## ଯୁଗ୍ମରୂପ

"ଉଚ୍ଛନ୍ନ ହେଲାଣି ଦେଶ ସର୍ବସ୍ୱାନ୍ତ ଏ ବନ୍ୟା ବିପ୍ଳବେ,
ଲକ୍ଷ କୋଟି ଜନପ୍ରାଣୀ ମୃତ୍ୟୁ ଗର୍ଭେ ଲୀନ ହେଲେ ଲବ
ଫେରାଇ ନ ଦିଅ, ଦିଅ ଭିକ୍ଷା ଯାହା ଲକ୍ଷ୍ମୀ ସ୍ୱରୂପିଣୀ !"
ମାଗୁଛନ୍ତି ସେବା ଦଳ ଭିକ୍ଷା ଗାଇ କରୁଣ ରାଗିଣୀ ।
ସେ କରୁଣ ଗୀତ ଶୁଣି ଉଦ୍‌ଗ୍ରୀବ ଲୋଚନେ ଦ୍ୱାର ଦେଶେ,
ଉଭା ହୁଏ ନାରୀ ଏକ-ଦୀନ ଦ୍ୱାର ଯାଏ ଅବା କ୍ଲେଶେ !
ବିବର୍ଣ୍ଣ ବଦନ ମ୍ଳାନ-ବାସ ଅଙ୍ଗେ ଦାରିଦ୍ର୍ୟ ସୂଚନା
ଝରି ପଡ଼େ ଅଶ୍ରୁ ବିନ୍ଦୁ ଶୁଣି ଗୀତ-କରୁଣ-ମୂର୍ଚ୍ଛନା ।
ଦ୍ୱିତଳ ପ୍ରାସାଦ ଶୀର୍ଷେ ବିଦ୍ୟୁତ ଆଲୋକ ତୁଚ୍ଛ କରି,
ବସି ବାସକସଜ୍ଜା ଅସାମାନ୍ୟା ଷୋଡ଼ଶୀ ସୁନ୍ଦରୀ;
ଅଳି ତା ଠାପରି କରେ, "ରୂପ ହାଟେ କେ ଦେବ ତୋ ମୂଲ୍ୟ?"
ଜବାଧରେ ଫୁଟେ ହାସ୍ୟ ବହିଯାଏ ସଙ୍ଗୀତ ବ୍ୟାକୁଳ !
ଜନନୀର ଯୁଗ୍ମରୂପ ଭାଳି କବି ସ୍ତବ୍ଧ-ମନ୍ତ୍ର-ମୁଗ୍ଧ
ବିଶ୍ୱ ଆଲୋକପାତେ ଗଢ଼ିଉଠେ ନିତ୍ୟ-ସୃଷ୍ଟି ସୌଧ ।



ଅସିଥିଲା ମାଆକୁଲେ ପଡର ଗୋଠାଇ,
ସରଳ ସୁନ୍ଦର ବପୁ ଆଭରଣ ନାହିଁ,
ନାହିଁ ବେଶ ପରିପାଟୀ ଅଯନ୍ତ୍ର ଜବସ୍ତ୍ର,
ଦିଶୁଥିଲା ତଥାପି ସେ ପୂର୍ଣ୍ଣିମା ପରି !
ବିବିଧ ମୁଖମଣ୍ଡନ ଜାଣିବ ସେ କାହୁଁ ?
ଜୁଟେ ନାହିଁ ଅନ୍ନ ଦୁଃଖେ ଆନ କଥା ଥାଉ ।
ରୂପ ବିପଣୀରେ କେବେ ସେ କାନନ ଫୁଲ,
ଜାଣିନାହିଁ କେବେ ହେବ ଆପଣାର ମୂଲ,
ନୀରବ ଜୀବନ୍ତ ତାର ମନେ ଯାଏ ବହି,
ବରଷ ତା କେତେ ପୁଛ ନ ପାରିବ କହି ।
କି ହେବ ବରଷ ଜାଣି ? ଝରଇ କାନନେ—
ଯେତେ ପତ୍ର ପୁଷ୍ପ ଲତା କେବା ତାହା ଗଣେ ?
ଏ ସୃଷ୍ଟି ବିଧାନେ ଥାଳ ନୀରବ ପ୍ରଣତ,
ଆରମ୍ଭ ନିଃଶେଷ ହେବ ତା ମନ୍ଥର ଗତ ।
ହସ ହସ ତା ନୟନ କରେ ଉପହାସ,
ନାଗରିକ କୋଳାହଳ ସଭ୍ୟତା ବିକାଶ ।
କାଳ୍ପତ ସୋହାଗ ପ୍ରୀତ ହାସ୍ୟ ଅଶ୍ରୁ ଧନ
ସେତକ କଳ୍ପନା ତାର ! ସେ ତାର ଜୀବନ !
ସେ ପୂର୍ଣ୍ଣ ନୟନେ ସଦା ଉଠଇ ଉଚ୍ଛୁଳି
ଲୀଳା ପ୍ରୀତ ସିନ୍ଧୁ ଦେଖି ହୁଏ ନାହିଁ ଭୁଲି ।

× × ×

ପୋଗଣ୍ଡ କୁମାରୀ ଅବା ଯୁବତୀ ତରୁଣୀ,
ନ ଥିଲା ତ ଅବସର ହେବା ମନେ ଗୁଣି ।
କହିବ ହେ କବିକୁଳ 'ଦଶୋଟି ବସନ୍ତ—
ଏତେକ ଏକେ ଲାଗି ତାକୁ କଲେ ରୂପବନ୍ତ ?'
ଭାଳିବାକୁ ନ ଥିଲା ଟେମା କବିତ୍ୱ କଳ୍ପନା,
ଜୀବନ ଅମୃତ ସ୍ପର୍ଶେ ପ୍ରାଣ ମୋର ବଣା,
ବର୍ଣ୍ଣିବାକୁ ତା ଅମୃତ ମାଧୁରୀ ଗରିମା,
ଦୁର୍ବଳ ଲେଖନୀ ଅଛି ପାଏନାହିଁ ସୀମା !
ଖୋଜିବ ତୁଳନା ତୁମେ ପ୍ରୀତ ରୂପ ଗୁଣ,
କହିବ ପଦ୍ମ ପଲାଶ ସମ ତାର ଅଙ୍ଗ,
କାହିଁ ମାନୁନାହିଁ ଉପମା ଅଲଣା,
ତା ରୂପ ବିଚାର ହେବ ସେ ଏକା ତୁଳନା !
ଦେଖିଛୁ ତ ନାଗରିକ ରୂପସୀ ନାଗରୀ,
ମନେ ପଡ଼ୁ ନାହିଁ କେହି ତୁଳ ହେଲାପରି ।
ଆଦି ସୃଷ୍ଟି ଅରବିନ୍ଦ ସମ ସେ ଉଜ୍ଜ୍ୱଳ !
ପ୍ରାଣ ପାରିବାର ଲକ୍ଷ୍ମୀ ସର୍ବ ଲୀଳାସ୍ଥଳ !

× × ×

ମନେ ପଡ଼େ କବି ଗୁରୁ* ଦେଖି ତୁମେ ଥରେ,
ବିଷାଦ ସଙ୍ଗୀତ ଶୁଣି ପର୍ବତ କନ୍ଦରେ,
ହୋଇଥିଲ ସ୍ତମ୍ଭୀଭୂତ ! ନ ଚଳିଲା ପାଦ !
ଏସନେ ଅମୃତ ପ୍ରୀତି-ରୂପ-ପରମାଦ !
ମରୁ ପ୍ରସ୍ରବଣ ସିକ ସେ ତବ ଜୀବନେ,
ଅନଶତ କାରୁଣ୍ୟ ପ୍ରୀତି ସଞ୍ଚିତ ସ୍ମରଣେ,

*୧୮-୧୯ଶ ଶତାବ୍ଦୀର ବ୍ରିଟିଶ କବି **Wordsworth.**

ଗାଇଲ୍ ତା ଶୁଣି କେତେ ମାଧୁରୀ ତା ସ୍ୱର;
ମାନ ଏ ଆନନ୍ଦରସେ ପ୍ରାଣ ଉଠେ ପୂରି !
ଅନନ୍ତ ସୃଷ୍ଟିର ଲୀଳା ବନ୍ଦେ ଏ ନୟନ,
ଅମର ସଙ୍ଗୀତ ଉତ୍ସ ଅଧର ଚୁମ୍ବନ,
ନିଷ୍କପଟ ଅନବଦ୍ୟ ସରଲତା ମୂର୍ତ୍ତି
ଦେଖିନାହିଁ ଶିଶୁଅଙ୍ଗ ସୌଷ୍ଠବ ଅଦ୍ଭୁତ !
ଏ ରୂପ କୁସୁମ ଭୃଙ୍ଗ ଯତ କଳ୍ପିତ—
କବିନାହିଁ ବୋଲି ଦଶେ ଉତ୍ଫୁଲ୍ଲ ପବନ !
ଶୁଣିଥିଲ କବି ରୂପ ବିଷାଦ କନ୍ଦନ,
ଦେଖିଥାନ୍ତ ଆଜ-ଶୁଭ୍ର-ବଚସ-ନନ୍ଦନ ।
ଆନନ୍ଦମୟୀର ନିତ୍ୟ ପବନ କଲ୍ୟାଣ,
ବନ୍ଦେ ସେ ନୟନ ଥରେ କରିଥାନ୍ତ ପାନ !

× × ×

ତୁଚ୍ଛ କବି ଜୀବନର ସକଳ କାରୁଣ୍ୟ
ଗମ୍ଭୀର ଆନନ୍ଦ ଗୀତେ ହେ ଶିଳ୍ପୀ* ନିପୁଣ—
ଗାଇଥାନ୍ତ ଏ ଜୀବନ ଆନନ୍ଦ ଅମୃତ !
ସକଳ ତୁଚ୍ଛତା ରୂପ ସ୍ପର୍ଶେ ଯେଣି ପୂତ ।

× × ×

ଅସୀମ ସାଗରେ ସେବା କୌମୁଦୀ ପ୍ଲାବନ !
ସନ୍ତରଣ ବୃନ୍ଦାବନେ ଅବା ବଂଶୀସ୍ୱନ !
ସୁଦୂର ଦିଗନ୍ତ ବାର୍ତ୍ତା ସଞ୍ଚିତ ନୟନେ,
ମର୍ତ୍ତ୍ୟର ଗରିମା ସବୁ ତୁଚ୍ଛ କରି ଯେଣେ,
ଅତନ୍ଦ୍ରିତ ପ୍ରାଣ ରସେ ଶିଶୁ ହୁଏ ବନ୍ଧ
କ୍ଷୁଦ୍ର ବାଳିକାକୁ ଏତେ ଭେଦ ଅଭିସନ୍ଧି—

* ଉକ୍ତ କବି Wordsworth.

ଦେଲ କିଏ ? ଏ ମାଧୁରୀ ଯତନେ ଶିଖାଇ
ମର୍ତ୍ତ୍ୟ ଅଲେଖିବା ବୋଲି ଦେଇଛ ପଠାଇ ?
ଦୈନ୍ୟ ଅମା ଅନ୍ଧକାରୁ ମାଧୁରୀ ବିମଳ,
ପଦ୍ମପତ୍ରେ ଅହା ଯେସନ୍ତେ ନୀର ଟଳ ଟଳ,
ଲଭନ୍ତୁ ସକଳ ଲୀଳା ଏଥି ସାର୍ଥକତା,
ସେ ଭଙ୍ଗୀରେ ଚିରବନ୍ଧ ଅବାଧ ଦେବତା,
ଧନ୍ୟ ମୁହିଁ ! ଧନ୍ୟ ହେଲା ସାର୍ଥକ ଜୀବନ !
ସଂଶୟ ଶୃଙ୍ଖଳବନ୍ଧି ଶାପ ବିମୋଚନ !
ସକଳ ଜଟିଳ ସୃଷ୍ଟି ନିମେଷେ ସରଳ,
ପ୍ରଫୁଲ୍ଲ ଏ ଦୃଷ୍ଟି ତଳେ ମୀଳିତ ମଙ୍ଗଳ,
ସୌନ୍ଦର୍ଯ୍ୟ, ଅମୃତ-ପ୍ରୀତି, ଜୀବନ, ସଂସାର,
ଅପାର ଆନନ୍ଦେ ଯହିଁ ସବୁ ଏକାକାର !
କିଏ ତୁହି ପୁଚ୍ଛିବି କି ? କ୍ଷୁଦ୍ର ବନଫୁଲ—
ପଥହୁଡ଼ା ପାନ୍ଥଲାଗି ତୁ ନିତ୍ୟ ଆକୁଳ ?
ସ୍ୱହେଁ ନାହିଁ କେଉଁ ତୋତେ ? ଦେଇନି କେ ମୂଲ ?
ମାନ ତୁହି ଚିର ସତ୍ୟ ! ସଙ୍ଗୀତ ଅତୁଳ !
ସହସା "ଏ ସର..." ବୋଲି ଜନନୀ ସୋହାଗୀ
ଡାକିଲା ଆଦର କଣ୍ଠେ ! ସ୍ୱପ୍ନଗଲା ଭାଗି !
ଦେଖିଲି ବାଳିକା କ୍ଷୁଦ୍ର ହୋଇ ଥରଥର,
ଜନନୀ ବସୁଧା ବକ୍ଷୁ ଗୋଟାଏ ପଥର ।
ସକଳ କରମେ ତାର ଟଳ ଟଳ ମୁଖ,
ଅଲକ୍ଷରେ ଲୁଚୁକରେ ମୋ ଅନ୍ତର ଦୁଃଖ ।
ରହନ୍ତୁ ସ୍ମୃତିରେ ଲିଖି ରୂପ-ଅବସ୍ଥତା,
ତଳେ କି ବାଧିବ ଆଜ ମରଣି ତୁଚ୍ଛତା ?



# ମହାନିର୍ବାଣ*

"ସ୍ନିଗ୍ଧ ସୁଗନ୍ଧ ଶାଳ ତରୁ ଛାୟା ମୁଁ ଶୀତଳ,
ବହିଲ ଅନିଳ ସ୍ନିଗ୍ଧ ମନ୍ଦ ଅବିରଳ,
ଶ୍ୟାମ ଦୂର୍ବାଦଳ ନବ ନୟନ ନନ୍ଦନ,
ବିରଚ ଆନନ୍ଦ ମୋର ଅନ୍ତିମ ଶୟନ
ଅଦୂରେ ନିଶୀଥସମ କ୍ଲାନ୍ତ ଅବସାଦ
ଜରା ବ୍ୟାଧି ଏ ନଶ୍ୱର ଜୀବନ ପ୍ରମାଦ
ଘୋଟି ଅସେ ମୁହୁଁ ଧୀରେ ଚିତ୍ତ ଅବସନ୍ନ
ବିଫଳେ ଭାଙ୍ଗୁଛ କିବା ରଚ ମୋ ଶୟନ
ଶିଥିଳ ଶକଟ ଚକ୍ର ଜୀର୍ଣ୍ଣ ବକ୍ର ନତ,
ଦୁର୍ଗମ ବନ୍ଧୁର ପଥେ ସଂକୀର୍ଣ୍ଣ ଶକତ,
ଚାଲିଛି ଅଶୀତି ବର୍ଷ ବେଶୀ ନୁହେଁ ଆଉ
ମରଣର ପ୍ରାପ୍ୟ ତାକୁ ଦିଅ ବେଳଥାଉ,
ଉଡ଼ିଯାଉ ପ୍ରାଣବାୟୁ ସହ ଯେ ବହନ,
କାହିଁକି ଶୋଚନା ଅଶ୍ରୁ ବିରଚ ଶୟନ ।
ନିର୍ବାଣ ଉନ୍ମୁଖ ଶିଖା ଦିଶେ ସୁମଧୁର
ନିଃଶେଷ କରିକୁଁ ତୈଳ ଯେହ୍ନେ ସେ ଆତୁର,
ମିଶିବାକୁ ମହାକାଳ ପ୍ରଶାନ୍ତ ଅନ୍ଧାରେ,
ଧ୍ୱନି ଯଥା ମହାଶୂନ୍ୟ ଶାନ୍ତ ନୀଳିମାରେ,

* ବୁଦ୍ଧଙ୍କର ଅନ୍ତରଙ୍ଗ ଶିଷ୍ୟ, ସୁହୃଦ ଆତ୍ମୀୟ ଓ ଅନୁଚର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କାୟା ପଛେ ଛାୟାପରି ତାଙ୍କର ଅନୁଗମନ କରିଥିଲେ ।

ଝରିବା ପାଦପ ଅଙ୍ଗୁ ପଳିତ ପତର
ନାହିଁ ତ ବୈଚିତ୍ର୍ୟ, ନୁହେଁ ପ୍ରକୃତି ଅନ୍ତର,
ଜନମିଲେ ମୃତ୍ୟୁ ଧ୍ରୁବ ଫେରିବ ତରଙ୍ଗ
ସାଗର ବେଳାରେ ଥରେ ହେଲେ ଗତିଭଙ୍ଗ;
ଜୀବନେ ମାତର ସାର ଚିତ୍ତ ସମ୍ପ୍ରୟୋଗ,
ସ୍ଥିର ଲକ୍ଷ ଯୋଗୀ ନିଷ୍ଠା ନ ଜାଣେ ବିୟୋଗ ।
ଅଟଳ ସାଧନା ବଳେ ସହଜ ନିର୍ବାଣ
ମରଣ ତା ବନ୍ଦୀସମ କରେ ଜୟଗାନ ।
ଅଗ୍ରସର ସେହି ପଥେ ! ବିଦାୟ ଏଥର !
ଶାନ୍ତ, ଶାନ୍ତ ! ପଡ଼ି ରହୁ ମର କଳେବର !

—— ——

## ବୁଦ୍ଧ ଓ ରାହୁଳ

ଧନ୍ୟ ଅଜ ଜନ୍ମଭୂମି ! ଶାକ୍ୟ ମୁନି ଆଗତ ନଗରେ,
ପୁରପଲ୍ଲୀ ଦୂର ଗ୍ରାମ ନରନାରୀ ଆନନ୍ଦ କେ ଧରେ;
ନିବସନ୍ତି ଶିଷ୍ୟ ମେଳେ ନଗର ଉପାନ୍ତ ବଂଶବନେ,
ଉପେକ୍ଷିତା ଯଶୋଧାରା କି ଅବା କଳ୍ପନା ରଖି ମନେ —
ପୁଚ୍ଛନ୍ତି ରାହୁଳେ "ବତ୍ସ ଶୁଣିଛୁ ନା ଆଗତ ତୋ ପିତା ?"
ଅଜ୍ଞକର ଜନନୀଙ୍କ ପ୍ରାଣେ ତାର ଜାଳିଲେ ଯେ ଚିତା
ଆସିଛନ୍ତି ସେ ନିଷ୍ଠୁର ! ହୁଏଁ ପଛେ ମୁହିଁ ନାରଖାର,
ଯାଅ ବତ୍ସ ! ମାଗ ଯାଇ ସନ୍ତାନର ଚିର ଅଧିକାର !
ଗଲେ ଯେତେ ବଂଶବନେ ସକଳେ ପ୍ରାସାଦେ ହେଲେ ଧନ୍ୟ
ମହା କାରୁଣିକ ବୁଦ୍ଧ ସର୍ବଜୀବ ଆଶ୍ରୟ ପରମ ।

ରହୁଲ ଯାଚକ ଶେଷେ,…"ଦିଅ ମୋର ନାଯ୍ୟ ଅଧିକାର !"
"ଶିର ଭିକ୍ଷୁ ତବ ପିତା ! ଭିକ୍ଷା ବସ୍ତୁ ତା ଜୀବନ ସାର !"
କହିଲେ ତଥାଗତ ମନ୍ଦେ ହସି…
"ଦ୍ୱାରେ ବୁଲି କରିବ କି ଭିକ୍ଷା ?
ବହ ଏ ଗୈରିକ ବାସ ଲଭ ଶ୍ରେଷ୍ଠ ନିର୍ବାଣର ଦୀକ୍ଷା !"



## *ପ୍ରକୃତ ପ୍ରଣୟ

ଅମାବାସ୍ୟା ( ଅନ୍ଧକାର )

୧— ଝାଣନା ଉଭସ୍ୱ ତୁ, ତୁ ବନ୍ଧୁ ମୋହ ଗଣି,
ଲଜ୍ଜା ସରମରେ ମୋର ପୋଡ଼ିଯାଏ ପ୍ରାଣ ।
ରୂପହୀନା କୁତ୍ସିତା ମୁଁ ଅମାବାସ୍ୟା ରାଣି,
ଦିବ୍ୟ ବପୁସନ୍ତ ତୁମେ ଅଲୋକର ଯାନୀ ।
ସପ୍ତସିନ୍ଧୁ ମନ୍ଥି ତୁମେ ଅମୃତ ପରମ,
ଦେବତାବାଞ୍ଛିତ ଦିବ୍ୟ ଜ୍ୟୋତି ନିରୁପମ ।
ତୁମ ରୂପ ଝଲ ଗୁହାଁ ଏ ସୃଷ୍ଟି ଅକୁଳ,
ସ୍ୱର୍ଗ ମର୍ତ୍ତ୍ୟ ଛଣା ସୁଧା ସେ ବଦନେ ଢଳ ।
କାହିଁ ତୁମେ ନିରୁପମ ! ମୁହିଁ ରୂପହୀନା !
ଲଜ୍ଜେ ସଢ଼ିଯାଏ ବନ୍ଧୁ ଦେବାକୁ ମୁଁ ଚିହ୍ନା ।

* ବୈଷ୍ଣବ ଓ ଅଲଙ୍କାରିକମାନେ ଏବଂବିଧ ପ୍ରଣୟକୁ ସନ୍ଦେହ ଚକ୍ଷୁରେ ଦେଖି ପାରନ୍ତି । ମାତ୍ର କଳ୍ପନାଲୋକରେ ଏହାର ସମ୍ଭାବନା ବଚନ ନୁହେ । ପୂର୍ଣ୍ଣିମା "ଅଲୋକ ଦୀପ୍ତ ତରୁଣ—ଅମାବାସ୍ୟା ସର୍ବାବୟବ ଅବଗୁଣ୍ଠିତା ରୂପହୀନା ନାରୀ । ଶୂନ୍ୟଲୋକରେ ଉଭୟଙ୍କର ଅପୂର୍ବ ମିଳନ । ଚନ୍ଦ୍ରଗ୍ରହଣ ରାତ୍ରିରେ ଏପରି କଳ୍ପନା ସମ୍ଭବପର । [ରଚୟିତା]

୨୧୨—

କି ଦେଖିବ ? ଅନ୍ଧକାର କୁତ୍ସିତ କାଳିମା ?
କି ଅବା ଜୀବନେ ତାର ଗରବ ଗରିମା ?
ସେ ଲାଗି ପ୍ରତୀଚୀ ଦ୍ୱାର ଅନ୍ତରାଳେ ରହ
ପିଇ ବନ୍ଧୁ ରୂପସୁଧା ମରମେ ମରଇଁ !
ହେ ମୋର ପରମ ଭାଗ୍ୟ ! ନ କର ବଞ୍ଚିତା !
ଧନ୍ୟ କର କୁତ୍ସିତାରେ ଢାଳି ପ୍ରୀତି-ଚତା ।

## ପୂର୍ଣ୍ଣିମା (ଆଲୋକ)

୨— ରହ ଆଜ କ୍ଷଣେ ସନ୍ଧ ହଜଇ ମୋ ଧୃତ,
ତୃଷିତୁ ଆଲୋକ ସୁଧା ପାଇନାହିଁ ତୃପ୍ତି !
ତେଣୁ ରେ ସଜନି ଏତେ ବ୍ୟାକୁଳ ବାସନା,
ସେ ଅଞ୍ଜନ କାନ୍ତି ଲାଗି ନୟନ ମୋ ବଣା
ନାଅ ଆଜ ଆଲୋକର ସକଳ ଗୌରବ,
ସାର ହେଉ ବିଶ୍ୱ-ସୃଷ୍ଟି-ପୀରତି-ଉତ୍ସବ,
ଆବରି ଦିଅ ଏ ବପୁ ସ୍ନିଗ୍ଧ ବସ୍ତ୍ରାଞ୍ଚଳେ,
ପରଶି ଶୀତଳ କର ପ୍ରୀତିପୁଣ୍ୟ ଜଳେ !
ଆଲୋକେ ଅନଳ ତାପ ପୀଡ଼ଇ ସଜନି,
ଲୋଡ଼େ ପ୍ରାଣ ତେଣୁ ଶାନ୍ତ ଶୀତଳ ରଜନୀ,
ନିଭଯାଉ ମୋର ସତ୍ତ୍ୱ ସ୍ନିଗ୍ଧ କାନ୍ତି ତଳେ,
ଗଳୁ ଏ ଅନ୍ତର ଯଥା ପାଷାଣ ତରଳେ ।
ଅଧର ଚୁମ୍ବନ ଶ୍ରମୁ କ୍ଳାନ୍ତ ଏ ନୟନେ,
ଶୈଶବ ସମାନ ଆଜ ଭାଗ୍ୟବାନ ମଣେଁ ।
ଅମାବାସ୍ୟା ? ଅନ୍ଧକାର ? ଅପୂର୍ବ ସୁନ୍ଦର
ପୀରତି କମଳ ସେ ଯେ ଅକ୍ଷୁଣ୍ଣ ଅମର ।

[ ୧୯୩୪ ]



## * ସ୍ମୃତିତର୍ପଣ

୧—ଖସୁଁ ଖସୁଁ ଜୀବନର ଯବନିକା ପାତ !
ପୁଣି ଦିବସର ଜନ୍ମ ! ମଙ୍ଗଳ ପ୍ରଭାତ—
ନବଜାତ ଶିଶୁ ସମ ଆନନ୍ଦବିହ୍ୱଳ !
ସର୍ବାଙ୍ଗ ବିକାଶ ପ୍ରାଣ-ବିକଚ କମଳ !
ଜଳ ସ୍ଥଳ ଶ୍ୟାମ ଶୈଳ ଦୂର ଗିରିମାଳ,
ଜନପଦ ପୁର ପଲ୍ଲୀ ଶାନ୍ତ ଚକ୍ରବାଳ,
ଜାଗ୍ରତ ସକଳେ ଶୁଭ୍ର ଆଲୋକ ଆହ୍ୱାନେ !
ଜାଗିଛି ମୁଁ ସୁଗଭୀର ବ୍ୟଥା ବହି ପ୍ରାଣେ !
ଭ୍ରମଇ ନିଭୃତ ଶାନ୍ତ ତଟିନୀ ପୁଳିନେ
ନିଃସଙ୍ଗ ଏକାକୀ ! ବନ୍ଧୁ, ମନେ ପଡ଼େ ଦିନେ ?
ଭ୍ରମୁଥିଲୁଁ ବେନି ଜନ ଏଥି ଲଘୁ ମନେ,
ବାର୍ଦ୍ଧକ୍ୟ ତରୁଣ ଅନ୍ତରର ପ୍ରୀତି ଧନେ !
ଆଜି ତୁମେ ନାହିଁ ! ତଳେ କୁହୁଇ ବିଶ୍ୱାସ
ଅଙ୍ଗତେ ଝରଇ ଅଶ୍ରୁ ଦୀର୍ଘ ଭଗ୍ନ ଶ୍ୱାସ !

୨—ଏହି ସେ ଏକାକୀ ହଂସ !—ଦୂର ମାନସର ?
ଅତିକମି ନଦୀ ଶୈଳ ଚଳେ ଖରତର !
ବହି ମୃତ୍ୟୁ ସ୍ମୃତି ବ୍ୟଥା ଚଳଇ ନୀରବେ.
ଆଲୋକେ ଅନ୍ଧାରେ ଅଶ୍ରୁ-ଆନନ୍ଦ ଉତ୍ସବେ ।

* ସ୍ୱର୍ଗତ ପୂଜନୀୟ ବିଶ୍ୱନାଥ କର ମହାଶୟଙ୍କ ଉଦ୍ଦେଶ୍ୟରେ ।

—ରଚୟିତା—

ନୀରବେ ଚଳିବା ପଥ କରିଛି ସେ ସାର,
ତୁଚ୍ଛ କରି ଅସ୍ମଦୈନ୍ୟ ଅଶ୍ରୁ ହାହାକାର !
ତା ଗତିରେ ପଥ ମୋର ଦିଶଇ ସରଳ
ପ୍ରତୀତ ଅମୃତ ପ୍ରାୟେ ଜୀବନ-ଗରଳ !
ମାନ ତୁମେ ନାହିଁ ? ବହିଯାଏ ଶାନ୍ତ ନଦୀ—
ଅସ୍ପଷ୍ଟ ପଶ୍ଚିମେ ନୌକା ଚଳେ ନିରବଧି,
ଜଳାଣି ତଟିନୀ-ସ୍ରୋତେ ପ୍ରଶାନ୍ତ ଗୌରବେ !
ତୁମେ ନାହିଁ ? ପ୍ରତୀତ ତ ହେଉ ନାହିଁ ଲବେ ?
ଅମର ତାରୁଣ୍ୟ ଲଭ୍ୟ ଛନ୍ଦ କରି ଗ୍ରନ୍ଥି !
ଶିର ଅବନତ ମୋର ହସଇ ନିୟତି !

୩—ଜ୍ୱଳନ୍ତ ଚିତାରେ ଦେହ ଅଛିଅଛି ଲଦି,
ଅନ ଥର ପର କେତେ ସହିଅଛି ବଧି !
ବହୁବାର ଅକାତରେ ଦେଇ ମୃତ୍ୟୁ ଦେୟ,
ଆତ୍ମୀୟ ସ୍ୱଜନ ବନ୍ଧୁ ପ୍ରୀତ ସୌଖ୍ୟ-ଶ୍ରେୟ
ଅନ୍ତର ଅଚଳ ଶିଳା ଶୂନ୍ୟ ! ବଡ଼ ଶୂନ୍ୟ !
ମରଣ ରହସ୍ୟ ଭେଦିବା ନୈପୁଣ୍ୟ—
ନ ଲଭିଲି ତଳେ ! ତେଣୁ ତବ ଅଦର୍ଶନେ—
ଶିଶୁ ସମ ଆପଣାକୁ ଅସହାୟ ମଣେ !
ଶିଶୁ, ମୁଁ ମାନବ ଶିଶୁ ! ନିତ୍ୟ ପ୍ରୟୋଜନ—
ଏ ଦୁର୍ବଳ ପ୍ରାଣେ ତବ ବିଶ୍ୱାସ ଦର୍ଶନ !
ପ୍ରୀତିରସାଣିତ ଜ୍ଞାନ ସୂକ୍ଷ୍ମ-ଅନୁଭୂତ,
ଆସ୍ଥିର ଅବିନଶ୍ୱର ସ୍ଥାବର ବିଭୂତି,
ଥିଲା ମୋର ପ୍ରୟୋଜନ !—ଶୂନ୍ୟ ପଥ ତୃପ୍ତି !
ଶୂନ୍ୟ ସେ ସବଳ, ସ୍ୱପ୍ନ—ଅଜ୍ଞ ସ୍ମୃତି ! ସ୍ମୃତି !

୪—ଏକାକୀ ମରାଳ କେଉଁ ଶୂନ୍ୟେ ଗଲା ଉଡ଼ି !
ରହିଗଲା ପଛେ କିସ ? ଅସିଥିଲା ତୁଣ୍ଡି ?
କି ଭଲ ଅସିଲା ଏଥି ? ପୁଚ୍ଛେଁ ମୁହିଁ ଯନ୍ତ୍ର !
ଉତ୍ତରରେ ନିଯୁତ ହସି ! ଶୂନ୍ୟ ! ମହାଶୂନ୍ୟ !
ମହାଶୂନ୍ୟେ ଚାହିଁ ତୋର ବିଳାପ ନିଷ୍ଫଳ ।
ଭ୍ରାନ୍ତ ନର ! ପୋଛୁ ବିରହର ଅଶ୍ରୁଜଳ !
ମରଣେ ସ୍ୱୀକାର କର ! ପ୍ରଣମ ବିଧାନେ !
ଚାହିଁ ଦେଖ ଶତାନଳ ଜଳେ ତୋର ପ୍ରାଣେ !
ମହାଶୂନ୍ୟେ ପ୍ରାଣବାୟୁ ହସିଯାଏ ଲେଉଟି,
ଭ୍ରମେ ମୁକ୍ତ ହଂସ ନ ଝାଡ଼ଇ ପର ଗୋଟି !
ଯାର ଅବିରାମ ଯାତ୍ରା ମହାଶୂନ୍ୟେ ଚାହିଁ,
ପାଥେୟ ସେ ଦୁଃଖ ଅଶ୍ରୁ ସଙ୍ଗୀତଟି ତାଇ,
ଉଡ଼ିଯିବା ଦେଶାନ୍ତର କରନ୍ତୁ ସେ ସାର,
ତା ମୁକତ ମନ୍ତ୍ର ଏକା ତୋର ଆପଣାର ।

୫—ନିସ୍ତରଙ୍ଗ ନୀଳାକାଶ ଶୂନ୍ୟ ! ମହାଶୂନ୍ୟ !
କେ କହିବ କାହିଁ ଗଲା ବିମୁକ୍ତ ଶକୁନ ?
ନ ଦିଶଇ ପଥଚିହ୍ନ, ଚାହିଁଛି ନିରାଶ !
ରହିଗଲା ଶୂନ୍ୟମାର୍ଗେ ମୁକତ ଆଭାସ !
ସେ ଆଭାସ ଅମୃତର ଅପୂର୍ବ ଇଙ୍ଗିତ !
ଘୋଷେ ମହାଶୂନ୍ୟେ !......ଯଥା ମୃଦଙ୍ଗ ସଙ୍ଗୀତ !
ସପ୍ତ ପାରାବାର ତଳେ ଅହା କି ମଧୁର !
ଗଲା ଉଡ଼ି ଯାଉ ପଛେ, ନୁହେ ମୁଁ ବଧିର !

ସେ ମୁକ୍ତ ଅଭ୍ରସ ମନ୍ତ୍ର ପରମ ସମ୍ବଳ,
ଦୀନ ଏହି ଜୀବନର ! ପ୍ରୀତି-ଅଶ୍ରୁଜଳ—
ଗହନ ଅନ୍ଧାରେ କରେ ପ୍ରାଣ ପରିପ୍ଲୁତ,
ଜାଗ୍ରତ ମୋ ବକ୍ଷ ଆଶା ଅଶ୍ୱାସ-ଅମୃତ ।
ତେମନେ ତୁମର ଗତ ! ସେ ଅସ୍ପଷ୍ଟ ସ୍ମୃତ !
ବହିଅଣେ ମୁକ୍ତିମନ୍ତ୍ର, ମଙ୍ଗଳ ବିଭୂତ ।

୬—ବିସ୍ତୀର୍ଣ୍ଣ ପ୍ରକୃତ । ଧାନ୍ୟକ୍ଷେତ୍ର ସୁପ୍ରସାର !
ଶ୍ୟାମଳ ଐଶ୍ୱର୍ଯ୍ୟେ କିବା ରୁଚିର ଉଦାର ।
ସୃଷ୍ଟିର ମଙ୍ଗଳ ତହିଁ ସମ୍ପୂର୍ଣ୍ଣ ପ୍ରକାଶ,
ଷଚେଏ ଅଲୋକ ଦିବା ଶୈଶବ ଅଭ୍ରସ ।
ଏମନେ ସ୍ୱରୂପ ତବ ସମ୍ପୂର୍ଣ୍ଣ ସୁନ୍ଦର,—
ପ୍ରଶାନ୍ତ ଗମ୍ଭୀର ସ୍ୱଚ୍ଛ ମଧୁର ଅନ୍ତର,
ଗୁଣି ପ୍ରାଣ ଗୁପ୍ତଧନ ଭୁଲିଛି ମୁଁ ପ୍ରାସ,
ତୁଚ୍ଛ କରିଅଛୁ କାଳ କ୍ରୂର ଉପହାସ ।
ବାର୍ଦ୍ଧକ୍ୟ ତାରୁଣ୍ୟ ପୁଣି ତରୁଣ ସ୍ଥବିର,
ଅଦ୍ଭୁତ ଏମନେ ମର୍ତ୍ତ୍ୟ ବେଭାର ପ୍ରୀତିର ।
ଡାକ ଅଛି ବନ୍ଧୁ ବୋଲି······ସହାସ୍ୟ ନୟନେ—
ତୁହି ମୁଖେ ମୋର ମୌନ ।···ନୀରବ !···ମୁଁ କ୍ଷଣେ—
ପୁଛଇ ବାର୍ଦ୍ଧକ୍ୟ ପ୍ରୀତି ଲଭେ ଅସମ୍ଭବ ?
ସକଳ ସମ୍ଭବ କରେ ମୃତ୍ୟୁ ଅନୁଭବ ।

୭—ରଖିଛ ତାରୁଣ୍ୟ ଟେକ ମୃତ୍ୟୁଲୋକ ଭେଦ,
ମାତର ବାର୍ଦ୍ଧକ୍ୟ ଭାର ନ ପାରେ ମୁଁ ଛେଦ ।

କାଧେ କାଳ ଉପହାସ ! ମୂକ ପଶୁସମ—
ଢାଳଦଏଁ ଅଶ୍ରୁବିନ୍ଦୁ ! ନିସ୍ପୃହ ନିର୍ମମ—
ନୃସ୍ତନ ସମ୍ମୁଖେ ମୋର ଦ୍ୱିଗୁଣ କଠୋର
କା ଲାଗି କରିବ ଗର୍ବ ତରୁଣ କିଶୋର ?
କି ବା ତାର ଶୂନ୍ୟପଥେ ସହାୟ ସମ୍ବଳ !
ଆତ୍ମତୃପ୍ତି, ଅଭିମାନ, ଦମ୍ଭ ଅଶ୍ରୁଜଳ ?
ତୁଚ୍ଛ କରେ ସବୁ କାଳ !......

ଅମୃତ ତାରୁଣ୍ୟ

ସମ୍ଭବ ବିଶ୍ୱାସେ ଜାଣେ । ତେଣୁ ତବ ପୁଣ୍ୟ,
ସ୍ଥବିରର ଦିବ୍ୟଶାନ୍ତି, ପରମ ଗୌରବ—
ମୋ ଚପଳ ଜୀବନର ।। ଶାନ୍ତ ପ୍ରଭା ତବ
ଲୋଡ଼ଇ ଅକୁଳପ୍ରାଣେ ! ଶୁଣଇ ଅନ୍ତରେ
ଅସ୍ପଷ୍ଟ ଆଶ୍ୱାସବାଣୀ ! ମାନ ଦୂରେ...ଦୂରେ !

୮—ବିସ୍ତୀର୍ଣ୍ଣ ସାଗର ! ପ୍ରଭଞ୍ଜନ ଭୟଙ୍କର !
ଉତ୍ତାଳ ତରଙ୍ଗମାଳ ପର୍ବତ ଆକାର ।
ବିକଟ ଗର୍ଜନ-ହାସ୍ୟେ ଉପୁଜେ ଆତଙ୍କ !
ଦୁର୍ଜ୍ଜୟ ସୈନିକ ସମ, ନିର୍ଭୀକ ନିଃଶଙ୍କ—
କାଟି ଚାଲେ ଲକ୍ଷ ତେଜ ଆପଣା ସରଣୀ
ସାଗରେ ଅମିତ ବଳ—ବାଷ୍ପୀୟ ତରଣୀ !
ସ୍ଥିର ଲକ୍ଷ୍ୟ ସେ ବନ୍ଦମେ ତେଜ ରହେ ହଟି,
ବିଜୟ ଗରବେ ପୋତ ଯାଏ ସେ ଚହଟି !
କ୍ରମେ ଯାତ୍ରା ଶେଷେ ସ୍ଥିର ହୋଇ ଅସେ ଗତି,
ଦୂରେ ଦିଶେ ପୋତାଶ୍ରୟ ! ଆଶ୍ରୟ ମୁକତି !

ସ୍ପଷ୍ଟ ସେହ୍ନ ବଂଶୀସ୍ୱନ ! ତେସନେ ଏ ଭବୁ—
ମେଲାଣି ନେବାର ବେଳେ, ନିର୍ବାଣ ପୁରରୁ—
ସେ କ୍ଷୀଣ ଜୀବନଦୀପ ଗତି କ୍ରମେ ସ୍ଥିର !
ଗଣୁଥିଲି ଶେଷ ଶ୍ୱାସ ପାର୍ଶ୍ୱେ ଥାଇ ମୀର !

୯—ଅନନ୍ତ ଅଜ୍ଞେୟ ମୃତ୍ୟୁ ପରମ ଅଗମ !
ଏ ଜୀବନପୋତ ତହିଁ ଲଭିବା ବିରାମ—
ନୁହେ ଅଦ୍ଭୁତ କିଛି !...ମାତ୍ର ତା ଗୌରବ—.
ନ ଲଭି ସାଗରବକ୍ଷେ ଲକ୍ଷ୍ୟ, ପରିଭବ,
ନ ଟଳି ସଂକଳ୍ପୁ, ନୋହି ଭଗ୍ନମନୋରଥ,
ତରଙ୍ଗେ ନ ହୋଇ ଗ୍ରାସ ଭୁଲିବାର ପଥ,
ଅରଜିଛ ସେ ଗୌରବ ଅକ୍ଳାନ୍ତ ସୈନିକ !
ମରିବାର ଘୃଣା ନାହିଁ ଦୁର୍ଜୟ ନିର୍ଭୀକ ।
ମୁଦିଛ ନୟନ ହସି ଶାନ୍ତପ୍ରାଣାରାମେ
ଲଭିଛ ପରମ ଗତି ଦେବ ଦିବ୍ୟ ଧାମେ ।
ଲାଗି ନାହିଁ ଏ ମର୍ତ୍ତ୍ୟର କାଳିମା କର୍ଦ୍ଦମ,
ଭେଦିଛ ଦୁର୍ଗମ ବ୍ୟୂହ; ସାଧିଛ ଧରମ ।
ସତ୍ୟର ପୂଜାରୀ ! ଦିନେ ଦେଖି ନାହିଁ ଭୀତି,
ନିର୍ଜୀବ ଜାତିକି ଦୀକ୍ଷା ଦେଲ ଜୀବ ନୀତି ।

୧୦—ମହାଶୂନ୍ୟେ ବଂଶୀଧ୍ୱନି ! ପ୍ରଣବ ସଙ୍ଗୀତ ।
କିଏ କାହିଁ ପାଇଁ କଲା ଧ୍ୱନି ବିଚଳିତ ?
କିଏ ବା ଉତ୍ତର ଦେବ ?......ଟାଳି କ୍ଷୀଣଧୃତି—
ମିଶିଲା ସେ ଅବା ନାହିଁ ?......ରହିଗଲା ସ୍ମୃତି !

କାହିଁକି ଡାକୁ ତୁ ଅଶ୍ରୁ ? ରହୁଁ ବା ଅନ୍ତରେ ?
ଅବିରାମ ସ୍ଫୁରେ ଧ୍ୱନି ! ମିଶେ ଶୂନ୍ୟ ପୁରେ !
ଶୂନ୍ୟ, ମହାଶୂନ୍ୟ ! କିଛି ମିଳେ ନାହିଁ ସଙ୍ଗ !
ଅଦ୍‌ଭୁତ ଉଦ୍ଭବ ତାର । ରକ୍ଷି ସ୍ମୃତି ବ୍ୟଥା-
ଦୁର୍ନିବାର ତୃଷା ଜାଳି ନିର୍ବାପିତ ଅହା,
ଅନନ୍ଦ ଅମୃତ ଗତି, ପ୍ରାଣି ପୁରେ ରହିଁ !......
କି ଖୁଜେ ନିଗମ ପୁରେ ? ଅନ୍ତରେ, ବାହାରେ,-
ଶୂନ୍ୟେ, ନୀଳାକାଶେ, କ୍ଷୀଣ ସେ ତଟିନୀ ଧାରେ ?
ସର୍ବସ ସ୍ଫୁରଣ ତାର ! ନାହିଁ ଅନ୍ତ ଅଦ !
ନିର୍ଦ୍ୱନ୍ଦ୍ୱେ ବାତୁଳ ମନ ରଖ ତା ସମ୍ବାଦ !

୧୧—ପୋଛୁ ବନ୍ଧୁ ସ୍ୱାର୍ଥ ଅଶ୍ରୁ ମୁଦିଲେ ନୟନ,
ନିଭୃତେ ମୋ ଶୂନ୍ୟପୁରେ ସେ ଧ୍ୱନି ସ୍ଫୁରଣ ।
ଅପୂର୍ବ ସେ ଧ୍ୱନି ତୁଲେ ବିଶେଷ ବାରତା ।
ଜାଗଇ ଅନ୍ତରେ ଲକ୍ଷ ସ୍ମୃତିର ମମତା ।
ବିଶେଷ ଅମୃତ ସୃଷ୍ଟି ଦୀପ୍ତ ପୁଣ୍ୟଲୋକ,
ରହେ କି ନଶ୍ୱର ମୋର ଗ୍ଲାନି ବ୍ୟଥା ଶୋକ ?
ମରଇ ବିରହ ବହ୍ନି, ମୃତ୍ୟୁ ଲାଜେ ଲୁଚେ,
ଲୁପ୍ତକର ସତ୍ତ୍ୱ ଯେବେ ସେ ଧ୍ୱନି ମୁରୁଛେ ।
ଅପୂର୍ବ ମିଳନାମୃତେ ସୃଷ୍ଟି ଉଦ୍‌ବେଳିତ,
ସବୁ କରେ ଏକାକାର ଅପୂର୍ବ ସଙ୍ଗୀତ ।
ସକଳ ହଜିଲା ଧନ ମିଳେ ମୋର ତହିଁ,
ଲକ୍ଷ କୋଟି ପଦ୍ମଫୁଲେ ହସେ ଜୀର୍ଣ୍ଣ ମହୀ;
ହସଇ ଶ୍ମଶାନ-ଭସ୍ମ, ଶିଖା ଉଠେ ଥରି;
ଶିବ ଆଶୀର୍ବାଦ କାର ଶୂନ୍ୟ ପଡ଼େ ଝରି ।

୧୨—ସେହି ଶୁଭ ଅଶୀର୍ବାଦେ ଲଭେ ତୁମ ସତ୍ତା
ଶୁଣିଲି ନୟନ ମୁଦି ହଜିଲା ବାରତା ।
ସକଳ ଅପ୍ରିୟ ପ୍ରିୟ ମୃତ ଉଠେ ଜୀଇ ।
ଅଘଟଣ ଘଟଣ ଏ କଲା କେଉଁ ବନ୍ଧୁ ?
କିଏ ବଜାଇଲା ବଂଶୀ ? ଏ କାର ପ୍ରକାଶ ?
ଦେଖଇଁ ଅଦୂରେ ବନ୍ଧୁ କର ସ୍ମିତ ହାସ !
ପୂର୍ବ ଅନୁରାଗ-ସୁଧା ଲଗିଛି ଅଧରେ,
ପୂର୍ବପରି ଦିବ୍ୟ ଶାନ୍ତ ଦୀପ୍ତ ନୟନରେ !
ଅପୂର୍ବ ଉଜ୍ଜ୍ୱଳ ବିଭା ପ୍ରଶାନ୍ତ ଆନନ,
ମୋ ବିରହ ଗ୍ଲାନ କରେ ତୁଚ୍ଛ ଅକାରଣ ।
ସେ ହାସେ ଝଲସେ ଶତ ଜନମର ସ୍ନେହ,
ପିତୃ ଅଶୀର୍ବାଦ ପୁଣି ସକଳ ମୋ ଶ୍ରେୟ,
ବନ୍ଧୁ ପ୍ରୀତି ଶିବ-ଇଚ୍ଛା କରଇ ପ୍ରସାର ।
ଅଦୃଷ୍ଟ ହେ ଧ୍ୱନିକାର ! ଘେନ ନମସ୍କାର !

୧୩—ଧ୍ୱନିରୁ ଜନମି ବନ୍ଧୁ ମିଶିଛ ଧ୍ୱନିରେ,
ଦେବ ନାହିଁ ଧରା ସ୍ୱାର୍ଥ ଅଶ୍ରୁ ବନ୍ଧନୀରେ ।
ଶୂନ୍ୟର ଶବଦ ତୁମେ ଲଭିଛ ବିଶ୍ରାମ—
ମହାଶୂନ୍ୟେ ! ପୂରିଅଛି ସ୍ୱପ୍ନ ମନସ୍କାମ ।
ବିପୁଳ ତରଙ୍ଗ ସିନ୍ଧୁ ବିନ୍ଦୁ କ୍ଷଣେ ଉଠି,
ଭାଙ୍ଗି ବାଲିସ୍ତୂପ ପୁଣି ଯାଇଛି ଲେଉଟି ।
କ୍ଷଣିକ ପ୍ରକାଶେ ତବ ସାର୍ଥକ ଜନମ,
ଶୂନ୍ୟ ଭଳି ଭୁଲିଅଛ ମରଲୋକ ଶ୍ରମ !

ଅଜାର ଏ ଦିବାସମ ଅଲୋକ-ଝଲମନ !
ବିଦ୍ୟୁତ-ଚମକ, ଦିବ୍ୟ-ଦୀପ୍ତି-ଅନୁପମ !
ସ୍ଫୂର୍ତ୍ତି ହୋଇ ମହାଶୂନ୍ୟେ ଲଭିଅଛ ଲୟ,
ଗାଇଛ ଅମୃତ ସୃଷ୍ଟି ସୃଷ୍ଟି-ଧାତା ଜୟ !
ହେ ଅମୃତ ଧ୍ୱନି ଧନ୍ୟ ତୁମର ବିଭୂତି !
ଯାଇଅଛ ଯାଅ ବନ୍ଧୁ ! ଥାଉ ପୁଣ୍ୟ ସ୍ମୃତି ।

୧୪—କୈଶୋରର ମରୁବାତ୍ୟା ମନେ ପଡ଼େ ଅଜ
ପୁରାତନ ଇତିବୃତ୍ତ !—ଉଠିଲା ସେ ବାଜ…
ସନ୍ଦେହ ଦୁନ୍ଦୁଭି ମନ୍ଦ୍ରେ ପ୍ରାଣେ ଦେଲା ତ୍ରାସ,
ଚିର ଅନଭିଜ୍ଞ ଭ୍ରାନ୍ତି କ୍ରୂର ଅବିଶ୍ୱାସ ।
ସନ୍ଦତ୍‌ଧିତା ଅଟ୍ଟହାସେ ଜାଗିଲା ପିପାସା
ଶୁଣିବାକୁ ମାନବର ଚିରନ୍ତନ ଭାଷା !
ଜୀବନର ସ୍ପର୍ଶ ଲାଗି ପରାଣ ବ୍ୟାକୁଳ,
ବିଶ୍ୱାସ ଭରସା ଅଶେ ନେନେ ଅଶ୍ରୁଳ ।
ଏତେ ବଡ଼ ଦେଶ ଗୋଟା ଚଉଦିଗ ବୁହିଁ,
ଲୋକ ଭଳି ଜଣେ ଲୋକ ନ ଦେଖିଲି କାହିଁ
ବ୍ୟବସାୟୀ ବଣିକର ଭିଡ଼ ଚାରିପାଖେ !
ନୀଚ ସ୍ୱାର୍ଥ ସ୍ୱଳ୍ପବୁଦ୍ଧି ଜୀବନର ଡାକ—
ଶୁଣିବା ସମ୍ଭବ କେବେ ?……
ଶୁଣିଥିଲ ତୁମେ !
ଲତା-କୁଞ୍ଜ-ପ୍ରସ୍ରବଣ ସମ ମରୁଭୂମେ ।

୧୫—ନିଃସଙ୍ଗେ ଦେଇଛ ସଙ୍ଗ ବଢ଼ାଇଛ କର ,
ପରମ ଉଦାର ବନ୍ଧୁ ଫେଡ଼ିଛ ଅନ୍ତର !

ସ୍ନେହ ମୈତ୍ରୀ ଅନୁକମ୍ପା ଦିବ୍ୟ ଭୂମାନନ୍ଦ,
ପରିପୂର୍ଣ୍ଣ ସେ ଅନ୍ତରେ, ଗୁହିଁ ମନ୍ଦଦ୍ୱନ୍ଦ୍ୱ !
ପିତାର ଅଶ୍ୱାସ ପ୍ରୀତି ବନ୍ଧୁ ଉତ୍କଣ୍ଠନା,
ସାଧକର ସତ୍ୟାନସ୍ଥା ଅମୃତ ମୂର୍ଚ୍ଛନା,
ଦେଖି ତହିଁ ଶାନ୍ତ ପ୍ରାଣ ଅବିଶ୍ୱାସ ଫଣୀ,
ପିଇଛୁ ଜୀବନ ରସ ପ୍ରମାଦ ନ ଗଣି ।
ଆଜ ତୁମେ ନାହିଁ ପାଶେ ! ଲାଗେ ସ୍ୱପ୍ନ ପରି !
ଶୂନ୍ୟ ପ୍ରାଣ କାନ୍ଦେ ଯେହ୍ନେ ନିଃସଙ୍ଗ କୁରରୀ ।
ସ୍ମୃତିର ଅଚ୍ଛନ୍ନ କେତେ ଦେଖାଇ ନୟନ,
ମାଗି ବହିଲେ କେ କହ ଅନନ୍ତ ଯୌବନ ?
ଖୋଜି ବୁଲେ ମରୁପ୍ରାନ୍ତେ ସ୍ଥାନ କାହିଁ ?···
ହାୟ !···
ବିଦାୟ ତରୁଣ-ବନ୍ଧୁ ବିଦାୟ ! ବିଦାୟ !

୧୬—ଜାଉ.ଅସିଲାଣି ଲେଲିହାନ ଚିତାନଳ !
ବାସାରେ ନୟନ ମୁଦେ ଏକାକୀ କମଳ !
ଯାଏ ନଦୀ ପରପାରେ ନିଃସଙ୍ଗ ରଥାଙ୍ଗ;
ଭବରଙ୍ଗଭୂମି କ୍ରୀଡ଼ା ଧୀରେ ହେଲା ସାଙ୍ଗ ।
ଦିବସ କଳ୍ପନା ଆହା ମିଶିଲା ଅନ୍ଧାରେ ।
ଅନନ୍ତ ଭରସା କାର ରୁଦ୍ଧ କାରାଗାରେ !
ଗୃହିଁ ବନ୍ଦୀ ବହେ ଦଗ୍ଧ-ଦୁଃସହ-ଜୀବନ,
ବିରହ ମରଣ କଷ୍ଟ ନୁହେଁ ଅକାରଣ ।
ସେହି ଧ୍ୱନି ? ସେହି ବାଣୀ ?······ପରମ ଆଶ୍ରୟ ?
ଯା ଯୋଗୁଁ ଅନ୍ତର ତବ ନିର୍ଦ୍ୱନ୍ଦ୍ୱ ନିର୍ଭୟ ?

ଶୁଣେ ସେ ନିର୍ଭର ବାଣୀ ଅସ୍ପଷ୍ଟ ସନ୍ଧ୍ୟାରେ,
ପ୍ରକାଶ ପରମ ଜ୍ୟୋତି ମୋହ-ଅନ୍ଧକାରେ ।
ସେ ଜ୍ୟୋତି ପ୍ରକାଶ ଯେଉଁ ତୁମେ ଅଗ୍ନି କଣା ।
ଅଜ୍ଞାନ ଲୋକକେ ଦୃଷ୍ଟି ନୁହେଁ ଅଜ ବଣା ।

୧୭—ନିମୀଳିତ ହୋଇ ଦିବା ପଦ୍ମ ନିମୀଳିତ,
ମଳିକ୍ଷ ପଛକେ ଷଣେ ଧ୍ୱନି ଅତିହ୍ରିତ,
କୌମୁଦୀ ଝାଉଁଳ ପଡ଼ୁ ଘନ ବନାନ୍ତରେ,
ଅମୃତର ସ୍ମୃତି ଅଜ ଭୁଲି ହେବ କରେ ?
ତରଙ୍ଗ ଲେଉଟି ଯାଉ ଦିଗନ୍ତ ସାଗରେ,
ସ୍ଫୁରିତ ବିଦ୍ୟୁତ ଅଭ୍ର ମିଶୁ ଅନମ୍ବରେ,
ନ ଫେରୁ ପଛକେ ପ୍ରୀତି-ମଦିର-ନୟନ,
ମଳିକ୍ଷ କୁସୁମ, ଶୁଖୁ ଝଙ୍କର-ଜୀବନ,
କଣ୍ଠେ ମରୁ ପଡେ ମୋର ବ୍ୟଥିତର ଭାଷା,
ମରିବାର ନୁହେ ଅଜ ଅମୃତର ଅଶା ।
ଭୁଲି ହେବ ଅଜ ସତେ ଅଦୃଷ୍ଟ-ବିଧାନ,
ଶିବ-ଅଶୀର୍ବାଦ, ବ୍ୟଥିତର ପ୍ରାଣାରାମ ?
ଯେ ବିଧାନ ବନ୍ଧୁ ତୁମେ କରିଛ ସ୍ୱୀକାର,
ନୈରାଶ୍ୟ ମରଣ ଦଳି କରେଁ ନମସ୍କାର ।

୧୮—ଯାଉଅଛ ? ଯାଅ ।···ପୂଜ୍ୟ, ପରମ ଅପ୍ରୀୟ ।
ଅନ୍ତିମ ବେଳାରେ ନିଃସ୍ୱ ନମସ୍କାର ନିଅ ।
ନ କରୁ ଏ ଅଶ୍ରୁ-ସ୍ୱାର୍ଥ-ମୋହ ଗତିରୋଧ,
ଜାଣିଛ ତା କୁସଂସ୍କାର, ମୃତ୍ୟୁ ପ୍ରତିଶୋଧ ।

ଶରମୁକ୍ତ ତୁମେ ବନ୍ଧୁ ଲଭି ବ୍ରହ୍ମଭୂତ,
ମରଣିକୁ ଅମୃତରେ ଦେଇଛ ଅହୁତ ।
ଦେଖିଲ ଜୀବନେ ଯାହା ଆନନ୍ଦ ଅମୃତ,
ମୃତ୍ୟୁ ଅଙ୍କେ ଢଳି ତାକୁ ପ୍ରାଣେ ଦୃଢ଼ୀଭୂତ ।
ସୁପ୍ରଶାନ୍ତ ଦିବ୍ୟ ଜ୍ୟୋତି ଦିଶେ ନିର୍ବିକାର ।
ସୁଦୂର ଦିବସ ଅଭ୍ର ଆଲୋକ ପ୍ରସାର ।
ଯେ ଆଲୋକ ଯୁଗେ ଯୁଗେ ଲଭଇ ଜନମ
ଯେ ଜ୍ୟୋତି ସଞ୍ଚାରେ ପଥ-କୁଟିଳ-ଦୁର୍ଗମ-
ଅବିଶ୍ୱାସ ଅନ୍ଧକାରେ ଦିଶଇ ସରଳ ।
ଅମୃତ ପ୍ରତୀତ ଅଙ୍କେ ମରଣ-ଗରଳ ।

୧୯—ଅମୃତ ମରଣ-ସିନ୍ଧୁର ମଙ୍ଗଳ ଆହ୍ୱାନ !
ଆନନ୍ଦ ଭରସା ଦୂର ପ୍ରଦୀପ ନିର୍ବାଣ !
ମଙ୍ଗଳ ସୃଷ୍ଟିରେ ଦିଶେ ସକଳ ସୁନ୍ଦର,
ପରମ ଆନନ୍ଦ ସ୍ପର୍ଶେ ସବୁ ଅନଶ୍ୱର ।
ଜୀବନ୍ତେ ଯେ ଦୀକ୍ଷା ଦେଲ ମରଣେ ସେ ଗାନ
ଗାଅ ଉଚ୍ଚେ ଆତ୍ମଭୋଳା । ଗାଅ ନିଃସ୍ୱ ପ୍ରାଣ ।
ଅଟଳ ବିଶ୍ୱାସେ ଅଶ୍ରୁ ଭୀତି ହେଉ ଲୟ,
ଗାଏଁ ମୁଁ ଜୀବନ ଜୟ ଅମୃତର ଜୟ ।
ମଙ୍ଗଳ ସେ ଧାତା ମୃତ୍ୟୁ ଯାହାର ବିଧାନ—
ଯେ ଶିବ ପ୍ରକାଶ ତୁମେ ! ଗାଅ ଜୟ ଗାନ !
ତୁଚ୍ଛ ସେ ଶ୍ମଶାନ ଭସ୍ମ, ତୁଚ୍ଛ ଚିତାନଳ ।
ସର୍ବସ୍ୱ ବିକାଶ ସୃଷ୍ଟି-ଅମୃତ-କମଳ ।
ସେ ଅମୃତେ ଲୀନ ତୁମେ । ନୁହ ଅସହାୟ,
ତହୁଁ ଲଭେଁ ଦିବ୍ୟଗତି । ବନ୍ଧୁ ହେ ବିଦାୟ !...

—୨୦

୨୦—ଖସିଛୁ ଜ୍ୟୋତିଷ୍କ ନଭୁଁ । କେତେ ଦିନ ଆଜ ?
ପୃଚ୍ଛୁ ଆପଣାକୁ,···ସବୁ ଯେତେକ ଗ୍ଲପ୍ୟାବାଜ ।
ଶୁଝିଛୁ କି ନାହିଁ ଅଶ୍ରୁ ଶତ ନିମନ୍ତ୍ରଣ ।
ସହସ୍ର ତାଡ଼ନ ପୁଣି କର୍ମର ପ୍ଲାବନ ।
କି ଉଦ୍ଦେଶେ ଧାଇଁ ଗ୍ଲୁଲେ ମଞ୍ଚ ଏ ଜନତା ?
ନାହିଁ କି ସେ ଦେଶେ ଜଣା ମରଣର ବ୍ୟଥା ?
ଦୂରେ କାର ଅଟ୍ଟହାସ ?···ପୁଣି ଯାଏ ଶୁଭ—
ପାଞ୍ଚଜନ୍ୟ ସମ କାର ନିଷ୍ଠୁର ଦୁନ୍ଦୁଭି ?
ଅଗ୍ରସର ! ଅଗ୍ରସର ! ନାହିଁ ଅବକାଶ !
ସମ୍ମୁଖେ ମଙ୍ଗଳ ବିଧି , ଊର୍ଦ୍ଧ୍ୱେ ମହାକାଶ ।
ଭଗ୍ନକାନ୍ତ ସୈନିକ ତୁ । କି ଦେଖୁ ଉଦାସେ
ଅବଧିକ ବର ବୃଥା ମରୁ ଉପବାସେ ।
ସ୍ମୃତିରେ ବିକାଶେ ତବ ଅମୃ-ଅନୁଭୂତି ।
କରମେ ବିକଶେ ସେହି ମଙ୍ଗଳ-ବିଭୂତି ।

୨୧—ସତ୍ୟଧର୍ମ ଆଦରଣ ଲାଗି ଯେ ବାହିନୀ—
ଯୁଝିଲେ ସମରେ, ତୁମେ ଅନ୍ତ୍ୟମ ସଇନି ।
କାଳ କଷଟିରେ ତେଜ ପ୍ରଭା ପରୀକ୍ଷିତ ।
ଅଟଳ ପର୍ବତ ପ୍ରାୟେ ବୀର୍ଯ୍ୟ ଅପ୍ରମିତ ।
ପଛଦୁଆ ଦେବା ଜାଣି ନ ଥିଲ ଜୀବନେ;
ଧନ୍ୟ ଯେ ଦେଖିଛୁ ସତ୍ୟନିଷ୍ଠା ରଣାଙ୍ଗନେ ।
ସଂଗ୍ରାମର ହାନି ଲାଭ କରିବା ଗଣନା,
ଦୁର୍ବଳ ପଦାତି ସମ ନ ଥିଲ ତ ଜଣା ।

ପ୍ରଚ୍ଛନ୍ନ ସେ ଅଗ୍ନିତେଜ ଧ୍ୟାନନେତ୍ର ତଳେ,
ବିଶ୍ୱାସ ବଳିଷ୍ଠ ଶାନ୍ତ ବଦନ ମଣ୍ଡଳେ !
ସତ୍ୟ-ସେନା ! ତେଜ ତବ ବ୍ରହ୍ମ-ଭୂତ-କ୍ଷୁଧା !
ଧନ୍ୟ ସେ ଲୁଣ୍ଠିଲୁ ପ୍ରାଣ ସୁରଧୂନି-ସୁଧା ।
ଦିଶେ ନାହିଁ ଆଉ କାହିଁ ସମଯୋଦ୍ଧା ଏକ,
ସାର ହେଉ ଏ ଜୀବନେ ତବ ସ୍ମୃତି ଟେକ ।

୧୧—ଢାଳି ଅସରାଏ ବୃଷ୍ଟି···ନିର୍ମଳ ଆକାଶ ।
ପରଶେ ପ୍ରଭାତେ ପ୍ରାଣେ ତାର ଫେରିବା ଶ୍ୱାସ ।
ଏସନେ ଅନ୍ତରକ୍ଷତ ଲୁବ୍ଧ କରେ ପର,
ପ୍ରିୟଜନ ବିରହରେ ଲୋତକ ଅସର ।
ଅଶ୍ରୁ ଦୀନ ଜୀବନର ବିପୁଳ-ଗୌରବ,
ଅନ୍ଧାର ମାଣିକ୍ୟ ପ୍ରିୟ-ବ୍ୟଥା ଅନୁଭବ ।
କହ ନାହିଁ ଅକାରଣ, ଅହେ ଜଡ଼ବାଦୀ,
ପରମ ଐଶ୍ୱର୍ଯ୍ୟ ଏକ କ୍ଷଣିକ-ସମାଧି ।
ସ୍ଥାନଚ୍ୟୁତ ଉଦାସୀନ ନିଃସଙ୍ଗ ପତତ୍ରୀ,
ରଜନୀ ଦୁର୍ଦ୍ଦିନ ଅନ୍ତେ କାହିଁ କର ଗତି ?
କେଉଁ ଧ୍ୟାନଲୋକେ ? ଦୂରେ ? ···ଅମୃତ ସନ୍ଧାନେ ?
ତରୁଣ ଦିବସ ଡାକ ଶୁଭିଲା କି ପ୍ରାଣେ ?
ଶାନ୍ତ ତବ ଚିତାନଳ ! ଭସ୍ମ ଦିଶେ ଖାଲି !
ମୁକ୍ତ ବିହଙ୍ଗମ ଦୂରେ ଯାଇଅଛି ଚାଲି !

୧୨— ଅବିରତ ବିଦଗ୍ଧ ଏ ମୋ କଳେବର,
ଏ ଇନ୍ଦ୍ରିୟ ଭୂତଗ୍ରାମ ଭସ୍ମ କେତେ ଥର

ନବୀନ ଏ ଦିବାସମ ସ୍ୱରୂପ ପ୍ରକାଶ,
କାଳ ରଖିଅଛି ସ୍ମୃତି ! କାହିଁକି କାରଣ ?
ଶୈଶବ ଲଭିଛି ଲୟ ତରୁଣ ସ୍ୱପନେ,
ତାରୁଣ୍ୟ ସ୍ଥବିର-କାନେ, ସ୍ଥବିର ମରଣେ ।
ସର୍ବସ୍ୱ ସ୍ଫୁରିତ ପୁଣ୍ୟ ଜୀବନ-ବିଭୂତି !
ଅମୂଲ୍ୟ ସମ୍ପଦ ନିତ୍ୟ-ପ୍ରାଣ-ଅନୁଭୂତି ।
ଗୋଟି ଗୋଟି ହୋଇ ତତ୍ତ୍ୱ ଗୁଳିଲେ ଭିଜାଣି,
ସାର କର ପ୍ରିୟ-ସ୍ମୃତି ନିତ୍ୟ-ସୁଧା ବାଣୀ ।
ନୀରବତା ଧାନ ଭଙ୍ଗେ କ୍ଷେପଣୀ ଶବଦ,
ତୋ ନୟନ ମୁଦ ଗୁହାଁ ଅନ୍ତର ସମ୍ପଦ ।
ପରମ ସୁହୃଦ-ପୂଜ୍ୟ-ଦିବ୍ୟ-ଗତ ସ୍ୱର,
ଫିଟାଇ ଦେ ନଦୀ-ଘାଟୁ କ୍ଷୁଦ୍ର ତୋର ତର ।

୨୪—ହେ ଅନନ୍ତଭୂମା ! ସୃଷ୍ଟି-ପ୍ରାଣ-ମୂଳାଧାର ।
କ୍ଷମ ଶତ ଅପରାଧ ମାନସ ବିକାର ।
ଅଜ୍ଞାନ ମାନବଶିଶୁ ଅନଭିଜ୍ଞ ଚିର !
ବିଶ୍ୱାସ ଆଶାରେ ତାର ନତ କର ଶିର !
ଆନନ୍ଦ ପ୍ରକାଶ ତବ ମଙ୍ଗଳ ବିଧାନ !
କ୍ଳୀବତ୍ୱ ନ କରୁ କ୍ଷୁଣ୍ଣ ଅବା ସ୍ୱଳ୍ପ ଜ୍ଞାନ !
ଅଭିମାନ ପ୍ରଜ୍ଞା ଦମ୍ଭ ହେଉ ପରାହତ,
ସାର ହୁଅ ଏ ଜୀବନେ ଅମୃତ ଶାଶ୍ୱତ !
ସର୍ବସ୍ୱ ବିକାଶ ତବ ! ହେ ଅଶ୍ରୁତ ଧ୍ୱନି !
ଜୀବନ ମୃତ୍ୟୁରେ ଶୁଭେ ନିତ୍ୟ ଆଗମନୀ !

ସୁବିପୁଳ ପ୍ରାଣଶକ୍ତି ! କେବେ ପ୍ରକାଶିତ—
ସଲିଳେ ଯେସନେ କୂର୍ମ୍ମ !...
ପୁଣି ସଙ୍କୁଚିତ !
ଜାଗ୍ରତ ମାତର ସତ୍ତ୍ୱ ! ନିତ୍ୟ ନିରଞ୍ଜନ !
ବିଭୂତିରେ ହସେ ସତ୍ତ୍ୱ-ଚିତ୍ତ-ବୃନ୍ଦାରଣ୍ୟ ।

୨୫—ଇଚ୍ଛାମୟୀ ! ଇଚ୍ଛାଶକ୍ତି ନ ବୁଝଇ ଦୀନ,
ଅସ୍ମିଦୈନ୍ୟେ ନିରବଧି ଯନ୍ତ୍ରେ ମୁଁ ମଳିନ ।
ଯାଏ ପ୍ରାଣ ଆସେ ପୁଣି ! ଖେଳେ ଉର୍ଣ୍ଣନାଭି
କରୁଣା ପ୍ରକାଶ ତବ ଅଶ୍ରୁ କରେ ଦାବି !
କ୍ଷମ ଅପରାଧ କ୍ଷମ ! ମୁଁ ଅଶ୍ରୁ ଆତୁର !
ହରିଛି ବିଶ୍ୱାସ ଦିବ୍ୟଜ୍ଞାନ ମୃତ୍ୟୁ କ୍ରୂର ।
ଅଜ ସେ ମାନବ ଆତ୍ମା ହରିଛ କୌଶଳେ —
ବଞ୍ଚିଥିଲି ସେହୁ ପ୍ରୀତି-ପୁଣ୍ୟ-ପ୍ରଭା ତଳେ ।
ସେ ପ୍ରାଣସ୍ୱରୂପେ ତବ ସହଜ ପ୍ରକାଶ ,
ହଜିବାରେ ସ୍ୱାଭାବିକ ଶିଶୁ-ଅବିଶ୍ୱାସ ।
ପ୍ରସାରିତ ଶକତିକି କଲି ସଙ୍କୁଚିତ !
ଜୀବନକୁ ବନେ ପ୍ରଭୁ ! କୁହଇ ବିଚିତ୍ର—
ଶିଶୁ କାନ୍ଦିବାର ! ତେଣୁ ଅପରାଧ କ୍ଷମ ।
ମାତର ଅମୃତ ସତ୍ତ୍ୱ ! ସତ୍ତ୍ୱ ଅନୁପମ ।



# ଭିନ୍ନ ରୂପାନ୍ତର

ସେଥର ବ୍ୟାପିଲା ଗ୍ରାମେ ପ୍ରବଳ ବସନ୍ତ,
ଲେଉଟିଲେ ଧରାରେ ଯେତେ ନାହିଁ ତାର ଅନ୍ତ ।
କେତେ ହେଲେ ବିକଳାଙ୍ଗ, ଚକ୍ଷୁ ଗଲା ଫୁଟି,
ଶ୍ରବଣ ବଧିର ହେଲା, ରୂପ ଗଲା ତୁଟି,
ପରମ ଆତଙ୍କ ବ୍ୟାପିଗଲା ଘରେ ଘରେ;
କେତେ ଧୂପ ଆରାଧନା ଦେବୀ ଉଦ୍ଦେଶ୍ୟରେ ।
କେତେ ଜୀବନକ ଗଲା ଦେବତା ପ୍ରତାପ,
ସକଳ କହନ୍ତି ମାତ୍ର ଦୈବ ଅଭିଶାପ ।
ରୋଗ ଶେଷେ ପଡ଼ି ପଡ଼ି ଶୁଣେ ମୁଁ ରୂପସୀ,
ବସନ୍ତ ଜ୍ୱାଳାରେ ପାରେ ନାହିଁ ଉଠି ବସି ।
ମାସ ଦୁଇ ପରେ ଦୁର୍ବିପାକ ଅବସାନେ,
ରହିଗଲେ ଯେତେ ତହିଁ ମଧ୍ୟରୁ ମୁଁ ଜଣେ;
ମାତ୍ର ନାହିଁ ପୂର୍ବ ରୂପ, ବିକଳାଙ୍ଗ ମୁଖ,
ଦର୍ଶକ ଆସିଲେ ଯେତେ ପ୍ରକାଶିଲେ ଦୁଃଖ ।
କେ କହେ ସୋହାଗ କଣ୍ଠେ-ଯୁଗ୍ମନେତ୍ରେ ସ୍ନେହ-
କି ଜଳା ନିଷ୍ଠୁର ଦୈବ ଚମ୍ପାଫୁଲ ଦେହ !
କେ ପୁଣି କରଇ କେତେ ରୂପର ବ୍ୟବସ୍ଥା,
ସକଳ ଶୁଣି ମୁଁ ହସେ ! ନାହିଁ ମୋର ବ୍ୟଥା !
ନ ଜାଣେଁ କହିବେ କିବା ଅନାଗତ ପତି,
ଅବା ଫେରାଇବେ ମୁଖ ଘୃଣାଭରେ ଅତି !
ଅବା ଅଶ୍ରୁ ଦୀର୍ଘଶ୍ୱାସେ ନ ଚାହିଁବେ ମୁଖ !
ଅସ୍ଥିର ମୋ ମାତା ଭାଳି ! ନାହିଁ ମୋର ଦୁଃଖ !

ମୋ ସୁନ୍ଦର ମୁଖେ ଦେଖି ଶତ ଶତ ଦାଗ,
ତୁହିଁ ମୁଖ ଦରପଣେ ବଢ଼େ ଅନୁରାଗ ।
ଅପୂର୍ବ ଗରବେ କମ୍ପା ବକ୍ଷ ହୁଏ ସ୍ଫୀତ,
ରମଣୀ ମରମେ କାଳ ଅମୃତ ସଙ୍ଗୀତ—
ସ୍ମୃତିରେ ଅନୁକ୍ଷଣେ ! ପୁଲକ ତା ମନ ପ୍ରାଣ !
ଲଭିଛି ମୁଁ ଅଳ୍ପ ମୂଲ୍ୟେ ସ୍ୱର୍ଗର ସନ୍ଧାନ
ନବ ଅଭିସାର ଲାଗି ଅନ୍ତର ଆକୁଳ,
ବସନ୍ତ ଯାଇଛି ଦେଇ କବା ରୂପ ଫୁଲ ।



## * ଦୁର୍ଗରକ୍ଷା

—୧—

କେବଳ କି କୋଳାହଳ ? କୋଳାହଳେ ଗୌରବ ପ୍ରକାଶ ?
ବିରାଟ ଏ ଜାତି ପ୍ରାଣେ ଯେସନେ ଏ ତୀବ୍ର ଉପହାସ !
ତୀବ୍ର ବ୍ୟଙ୍ଗ ! ରଙ୍ଗ, ରସ, ବାହୁସ୍ଫୋଟ, ଅତୀତ ଉଦ୍ଧାର—
କାଳ ନିଷ୍ଠୁର ପରଖୁ ଲଭିବ କି ଏସନେ ନିସ୍ତାର ?
ପ୍ରାଣହୀନ ହୀନବୀର୍ଯ୍ୟ ନାହିଁ ଯାର ତଳେ ଆତ୍ମବୋଧ,
ଅଲକ୍ଷ୍ୟେ ସଞ୍ଚିତ ଭାଗ୍ୟେ ଅଲଙ୍ଘ୍ୟ କାଳର ପ୍ରତିଶୋଧ !
ହୋଇଛି ସହଜ ଲଭ୍ୟ ଜୀର୍ଣ୍ଣ ଦୁର୍ଗ, କାଲି ଅବା ଲୟ,
ପ୍ରଚ୍ଛନ୍ନ ବିଜୟ ପଛେ ପରାଭବ ଗ୍ଲାନି ମୃତ୍ୟୁ ଭୟ !
ନିର୍ଜୀବ ସୈନିକ ଯେତେ ସମବେତ କର କୋଳାହଳ
କରୁନାହିଁ ଅନୁଭବ ? ଆତ୍ମଦୈନ୍ୟ ନୁହ କି ବିକଳ ?
କେ କରିବ ଦୁର୍ଗ ରକ୍ଷା ? ଜୀବନର ନବ ଅଭିଯାନ—

* ନବୋତ୍କଳ ପ୍ରଦେଶର ପ୍ରଥମ ସ୍ମାରକୋତ୍ସବ ଉପଲକ୍ଷେ ।

ଯା ଯୋଗୁ ସମ୍ଭବ ନିତ୍ୟ କାହିଁ ସେହୁ ଦୁର୍ଜ୍ଜୟ ପବଣ ?
ଦୁର୍ବଳ ନିର୍ଜୀବ ହାତେ ଦେଖି ତେଣୁ ବିଜୟ କେତନ—
"ସହାୟ ଦେବତା ତୁମେ !" ଲୁବ୍ଧ ବନ୍ଦୀ କରେ ନିବେଦନ !

—୨—

କହେ ବନ୍ଦୀ ଶାସ୍ତ୍ର ନେବେ, ଦୁର୍ବଳ ଜାତିର ଭାଗ୍ୟବିଧି !
ସମ୍ପାଦ ରଖିବେ ସତେ ଦେଲ ଅଜ ଯେ ଅମୂଲ୍ୟ ନିଧି ?
ଧରତେ ନୃହର ତଳେ; କାହିଁ ନିଷ୍ଠା, କାହିଁ ବା ଶକତ ?
କାହିଁ ସେ ପୌରୁଷ ଯାର ତେଜେ ମରେ ଦୀନତା ଦୁର୍ଗନ୍ଧ ?
ସମବେତ ଯୋଦ୍ଧୃ ଯେତେ ଅସ୍ଫାଳନ-ଚହାଡ଼-ନିପୁଣ,
ବିହ୍ୱଳ ଯେସନେ ଶ୍ୱାନ ପଲ୍ ପାଶେ ନିରେଖି ପିଶୁନ ।
ଅର୍ଜ୍ଜିନାହିଁ କହୁ ଜଣେ ନର ଆଖ୍ୟା ମାନବ ଗୌରବ,
ସର୍ବେ କୋଳାହଳପ୍ରିୟ, ଘୁଞ୍ଚ ନାହିଁ ଏ ଜାତି ଶୈଶବ ।
ନ ଦଣେ ପୌରୁଷ ନିଷ୍ଠା ଦମ୍ଭେ ଯାର ଧରା ଉଠେ ଥର,
ଉଦାର ସେ ମାନବତ୍ୱ ଅନ୍ଧକାର ମରେ ଯାକୁ ଡର—
ଯହୁଁ ଦଶେ କାହିଁ ତଳେ ! ଉପୁଜଇ ତେଣୁ ଶଙ୍କା ଭୟ,
ଦୁର୍ବଳର ସ୍ୱାଧୀନତା ପରାଜୟ ସମାନ ନିଶ୍ଚୟ ।
ସହାୟ ଦେବତା ତୁମେ ଦୁର୍ବଳ ଜାତିର କର୍ଣ୍ଣଧାର
ଦିଅ ବୀର୍ଯ୍ୟ ସତ୍ୟନିଷ୍ଠା ଶିଖାଅ ନିଶାଣ ତୋଳିବାର ।



## ବନ୍ଦୀ ଦେଶ

ସ୍ୱେଚ୍ଛାରେ ମୁଁ ବନ୍ଦୀ ରାଜା ! ମୋର ପରବାଣ—
ତବ ରାଜଦରବାରେ ଅମ୍ଭ-ଅପମାନ !
ଯହି ସିଂହାସନେ ବସି କରଇ ବିସ୍ତାର
ଅଜ୍ଞାନ, ତମିସ୍ର, ଦମ୍ଭ, ସ୍ୱାର୍ଥ, ସ୍ୱେଚ୍ଛାଚାର,
ତହିଁ ଶୃଙ୍ଖଳିତ ମୋର ପରମ ଗୌରବ,
ଗାଉନାହିଁ ସ୍ତୁତି ବାକ୍ୟ ସେତିକି ଗରବ ।
କହନ୍ତି ଅପାରେ ଦାନ ବାବଦୂକପର
ପକ୍ଷେ ଅମୂଲ୍ୟବାଣୀ ଯୋଡ଼ହସ୍ତ କରି,
ସେତିକି ଅଶ୍ୱାସ । ମୃତ୍ୟୁଭୟ ମହାରାଜ ?
କୁଳିଶୁଁ କଠୋର ପ୍ରାଣ ଯାର, ମୃତ୍ୟୁ ବ୍ୟାଘ—
ଡରିବ ତାକୁ କିସ ? ପୂର୍ଣ୍ଣ ହେଉ ଅଭିଳାଷ,
ବୃଥା ବାକ୍ୟେ ନ କରନ୍ତୁ ଅମ୍ଭ-ଉପହାସ ।
ମୃତ୍ୟୁ କାରାଗୃହ ଅବା ଚିର ନିର୍ବାସନ,
ଅକାତରେ ନେବ ବରି ଦୀନ ଅକିଞ୍ଚନ ।
ଦୁଃସହ ଏ ରାଜ୍ୟେ ବାସ ! ଯହିଁ ସ୍ୱେଚ୍ଛାତନ୍ତ୍ର—
ସ୍ୱାଧୀନତା ନାମେ କରେ ଅସତ୍ୟ ପ୍ରସ୍ତର—
ପାଳକ ଆସନେ ଯହିଁ ବସେ ଦାମ୍ଭିକତା,
ଅମ୍ଭ-ଅଭିମାନ, ତହିଁ ଶୋଭେ ନୀରବତା ।
ପଚାରିଲେ ବୋଲି କଲି ନିଷ୍ଠୁର ଉତ୍ତର,
ନିର୍ଭୟେ କହଇଁ ମାନେ ଇଚ୍ଛା ଯାହା କର ।
ନିତ ଭକ୍ଷେ ଅସହାୟ ମକ୍ଷିକା ମଶକ
ଅଜ୍ଞାତେ ସଜ୍ଞାନେ ଦଳେ ମାନବ ଭକ୍ଷକ;

ଅସ୍ପ ପରତୃପ୍ତି ଲାଗି ତେସନେ ରାଜନ
ଦଣ୍ଡିବ ପ୍ରବଳ ଇଚ୍ଛା ? ନୋହେ ଅଭାଜନ ।
ଅବା ସେ ଅନ୍ତରେ ହେଲେ କରୁଣା ଉଦୟ,
ଦେବ ଅବା ହେୟଜ୍ଞାନେ ମୁକତ ଅଭୟ,
ମାଏ ରାଜ୍ୟ ସିସୀମାରେ ଅଭ ଜଳସ୍ପର୍ଶ—
ନ କରିବ ପଣ ମୋର ଅନ୍ତିମ ଆଦର୍ଶ ।
ନରକରୁ ବଳି ହୀନ ଧିକ୍କ ସେ ଜୀବନ,
ପରପୁଷ୍ଟ କଟର ଯାକୁ ଏହୁ ସମୀରଣ—
ଏ ହୀନ ମୁଉତା, ଘୃଣ୍ୟ ଅସ୍ପୃଶ୍ୟ ସଲୀଳ,
ନ ପାରିବ ରହି ରାଜା ଅଭ ଏଥି ତଳ !
ଜନ୍ମଭୂମି ? ସ୍ୱର୍ଗୁଁ ଶ୍ରେଷ୍ଠ ? ନୁହେଁ କଳପନା ।
ଯହିଁ ମୈତ୍ରୀ ନାମେ ସତ୍ୟ-ସମାଧି ରଚନା,
ସେ ମୋର ଜନମ ଭୂମି ? ପଶୁ ଲୀଳାସ୍ଥଳୀ !
ଲେଖିଡ଼ା ତହିଁ ବଳବନ୍ତ ପୌରୁଷର ବଳି ।
ଦେବ ଯେବେ ମୁକ୍ତି ରାଜା ମନେ ମୋର କଚ୍ଛେ,
ପ୍ରଣମି ଏ ଦେଶେ ନମି ବିଶ୍ୱସ୍ରଷ୍ଟା ପଛେ,
ଖୋଜିବ ଆପଣା ଭୂମି ବିସ୍ତୀର୍ଣ୍ଣ ପ୍ରବାସେ,
ନ ମରଇ ଯହିଁ ପ୍ରାଣି ସତ୍ୟ ଉପବାସେ ।
ମାନବ ନୁହଇ ଯହିଁ ନର-ଭାଗ୍ୟ-ଦାତା,
ଶୂନ୍ୟ ସ୍ୱେଚ୍ଛାଚାର, ସେ ମୋ ଜନ୍ମ ଭୂମିମାତା !
ଏସନେ ଉତ୍ତରୁ ରୁଦ୍ଧ ସ୍ଥବିର ଅମାତ୍ୟ—
ପ୍ରଜ୍ୱଳିତ ରୋଷାନଳେ ଦୀପ୍ତ ରାଜଗାଏ ।
ଶେଷେ ହେଲା ଦଣ୍ଡାଦେଶ !.........
"ରଖ ଦିନ ସାତ—
ଅନଶନେ କାରାଗୃହେ ! ସକଳ ଅଜ୍ଞାତ !

ଅଷ୍ଟମ ଦିବସେ ବନ୍ଧି କରି ରଜ୍ଜୁ, କରି,
ନଗରେ ବସାଇ ନେବ ଗର୍ଦ୍ଦଭ ଉପର ।
ରାଜ୍ୟ ଉଚ୍ଛୁଳିବ ହାସେ କରତାଳି ଶବ୍ଦେ
ଛାଡ଼ିବ ଏକାକୀ ଶେଷେ ଘନ ବନ ମଧ୍ୟେ ।"
ଦରବାରେ ହେଲା ଘନ କରତାଳି ବୃଷ୍ଟି,
ଶୁଭେ "ସାଧୁ, ସାଧୁ!" ରବ । ବୃଦ୍ଧ ବଦ୍ଧଦୃଷ୍ଟି —
ନରଭାଗ୍ୟ ବିଧାତାରେ କହେ ନମ୍ରସ୍ୱରେ,
"ଧନ୍ୟ ହେଲି ! ଭୋଗ ରାଜ୍ୟ ମହା ଆନନ୍ଦରେ ।"



## ରିକ୍ସାବାଲା

ଖଟି ଖଟି ଦିନମାନ ଗର୍ଦ୍ଦଭ ସମାନ,
ରଙ୍ଗି ପିଣ୍ଡିଗୋଠା ଉଡ଼ିଗଲାଣି ବା ପ୍ରାଣ ।
ଧନିକ ଅଳିନ୍ଦେ ବସେ ବରଷାକୁ ଡରି,
ଦେଖି ଲାଗେ ଶ୍ମଶାନର ପ୍ରେତ ଆତ୍ମା ପରି ।
ଡୁହାଇ ଡୁହାଇ ବାଆପାଣି ଆସେ ମାଡ଼ି,
ପଥ ପାର୍ଶ୍ୱେ ଧୂଳି ଧୂସରିତ ରିକ୍ସା ଗାଡ଼ି ।
ଆସଇ ବରଷା ଯେହ୍ନେ ଜନନୀ କଲ୍ୟାଣୀ,
ଉଲ୍ଲସି ଉଠଇ ବସୁନ୍ଧରା ଦଗ୍ଧ ପ୍ରାଣୀ ।
ଶୀତଳ ପବନ ଯେହ୍ନେ ପ୍ରେୟସୀ ନିଶ୍ୱାସ,
ଉଷାର ମଦିର ସ୍ୱପ୍ନ ହରେ ଶତ ତ୍ରାସ ।
ପ୍ରଥମ ଆଷାଢ଼ ସିକ୍ତ ସ୍ନିଗ୍ଧ କ୍ଷିତିଗନ୍ଧ,
ବହେ ଆଣେ ନିଃସ୍ୱପ୍ରାଣେ କି ଆଶା ଆନନ୍ଦ !

ଭୁଲିଲ ସେ କ୍ଷଣେ କ୍ଳାନ୍ତ ଭୁଲେ ଅସ୍ପୃଶ୍ୟ,
ଚାହି ଅକାଶକୁ ଜାଗେ ସୁଦୂର ମମତା ।
ଅଜି ସେ ନୁହଇ ନିଃସ୍ୱ, ନୁହେ ସେ ଏକାକୀ,
"ନୁହେଁ ଭରବାହୀ ପଶୁ" ପ୍ରାଣଭରେ ଡାକେ;—
ମନେପଡ଼େ ପୁଣି ତାର ନଦୀ ଅରପାରେ
ତା ପିଲାଏ ପଥ ଚାହିଁଥିବେ ଅନ୍ଧକାରେ ।
କେସନେ ବା ଯିବ ଫେରି ? ଭାଳେ ମନଦୁଃଖେ—
ରୁଗ୍ଣା ତା ଘରଣୀ ବେନି ଶାବକଙ୍କ ମୁଖେ—
ଥିବ କିବା ଗୁଣ୍ଡି ? ଦେଇନାହିଁ କିଛି କଣି,
ମନ୍ଦ କପାଳକୁ ଅଜମାଏ ଅଣାଡନ—
ପଡ଼ିଛି ତା ଭାଗେ, ମାଲିକର ପାଞ୍ଚଅଣା,
ଗାଡ଼ିର ବାହୁଲ୍ୟ ଦନ୍ତୁଦନ ବୁଢ଼ିକଣା ।
ତା ଭାବନା ଦେଖି ହସି ଉଠେ ସମୀରଣ,
ବାର୍ଦ୍ଧକ୍ୟ-ମୃତ୍ୟୁରେ ଯଥା ତୁଚ୍ଛେ ସଞ୍ଜବନ ।
ଏକାଳେ ଧନିକ ଗୃହ ମଧ୍ୟୁ ଆସେ ଦାସୀ,
ବାକ୍ୟବାଣେ ଭାଜି ପଟଡ ଅବା ମେଘ ରାଶି ।
ବଜ୍ର କଡ଼ମଡ଼ସମ ହୁଙ୍କାରି ହକାରେ
"କିଏରେ ବସିଛୁ ଭୂତ କିବା ଅଧିକାରେ ?
ଯା' ଯା', କୋଢ଼ି, ପଙ୍ଗୁ ଭାଷେ ଧନିକ ଗୃହିଣୀ—
"ଉଡ଼, ଉଡ଼, ରୋଗୀ ଅବା ପଙ୍ଗୁ ନାହିଁ ଜାଣି ।"
"ଯାଅ ଉଠି ନିଉଛୁଣା ।" ଗର୍ଜେ ପୁଣି ଦାସୀ;
ଗୃହ ସ୍ୱାମୀ କହୁଛନ୍ତି, "ଚୋରଟାଏ ଅସି—
ବସିଅଛି କାହୁଁ, ଦିଅ ଥାନାକୁ ପଠାଇ ।"
ଭୃତ୍ୟ ଅସି ଉଚେ କହେ, 'କାହୁଁ ପାଜି ଆହୁଁ ?'

ଉଠିଯାଏ ଶ୍ରମକ୍ଲାନ୍ତ ଦୀର୍ଘ ଉଚ୍ଛ୍ବାସେ,
ସ୍ବପ୍ନ କାହିଁ ଯାଏ ଭାସି ! ପଶ୍ଚାନ୍ତ ହତାଶେ—
ଗ୍ରନ୍ଥ ସୌଧଶୀର୍ଷେ, ଗୁଲେ ପୁଣି ରିକ୍‌ସା ଧରି,
ଭ୍ରମି ଭାର-ଚାହାଁ-ପଣ ଭାଗ୍ୟକୁ ଆଦରି ।

[୧୯୬୭]

---

## ଗର୍ଭ—

୧—ଖଦଗଧ କଲ ମୃତ୍ୟୁ ମାଂସ ଅସ୍ଥିଚୟ,
ମାତର ପୋଡଛି କାହିଁ ରକ୍ତାକ୍ତ ହୃଦୟ ?
ସେହି କ୍ଷଣ-ଖଦ୍ଧ ହିୟା ଭୁଦ୍ଧଯୁ ନୟନ,
ଖଷଡ ଲକ୍ଷ୍ୟ ଶାନ୍ତ କରୁଣି ଲପନ
ଭସ୍ମ ଶେଯ୍ୟା ଉଠେ ଜଳି ! ଦ୍ବିଗୁଣ ଉଜ୍ଜ୍ୱଳ !
ପ୍ରଳୟପୟୋଧି ଜଳ୍ପ ଜୀବନ କମଳ ।
ସେ ଚିର ଭୁଦ୍ଧଯୁ ଅହ୍ନାଶୋଷିତ ଇଙ୍କର୍ଷ୍ଟର
ଯେସନେ ପରମ ସତ୍ୟ ଅଯୂନ୍ତ ଅମର ।
ଦେଖିଛି ସେ ଥରେ ମୂର୍ଖ ଶୁଣିଛି ସେ ବ୍ୟଥା,
କୋଟି ନିପୀଡତ ସିନ୍ଧୁ ସଂଗ୍ରାମ ବାରତା,
ପରତେ ଯିବ କି କେବେ ମୃତ୍ୟୁ ବ୍ୟବଧାନ ?
ପଡ୍ଭୁଡ଼ ଏ ଯାବା ଶେଷେ ଅମୃତ-ସନ୍ତାନ ।
ପରମ ନିର୍ଭୀକ ଶୁଣି ସତ୍ୟ ଜୈବ ବାଣୀ,
ନୈଷ୍ଣବ୍ୟ-ସାଗରେ ତରୀ ଗୁଲଛି ଉଜାଣି ।

* ଲୁଝ୍ ଦେଶର ସ୍ବନାମଧନ୍ୟ ସାହିତ୍ୟକ ।

୨— ଅନଳ ସ୍ଫୁଲିଙ୍ଗ ଅମ୍ଭା ହେଉ ଅତି ତୁଚ୍ଛ
ନିଷ୍ପେଷଣ ସିନ୍ଧୁ ମଧ୍ୟେ ଟିକିଶୃଙ୍ଗ ଜଳ ।
ଗରଳ ସିନ୍ଧୁରୁ ଅଣେ ଅମୃତକୁ ଛାଣି,
କେ ଢରବ ଭସ୍ମ ସତ୍ୟ ଜ୍ୱାଳାମୟୀ ବାଣୀ ?
ହେଲାତ ବୁଦ୍‌ବୁଦ ସମ ଜୀବନ ସାଗରେ,
ଜାଗି ଜଲ୍ ଶମନ୍ତନ ପର୍ବତ ପ୍ରଭାତେ ।
ମରଛି ସକଳ ସୃଷ୍ଟି ସବୁ ଅନାସ୍ଥିର,
ସତ୍ୟ ନିଷ୍ପେଷଣ ସଦା ସ୍ୱପନ ଅସାର ।
ଜୀବନଜାହ୍ନବୀ ଅଟେ ଅଣିଲ୍ ହୁଙ୍କାର,
ମରଣ ବିସ୍ମୃତ ଲେଖକୁଁ ହୃଦରକୁ ଢାଳି ।
ଲକ୍ଷ କୋଟି ନିଃସ୍ୱ ମୁଖେ ଫୁଟାଇଛ ହାସ,
ଉସର ଭୂମିରେ ପୁଣି ପ୍ରାଣ ପରକାଶ !
ହେ ନିଃସ୍ୱ ବୁଭୁକ୍ଷୁ ବନ୍ଧୁ ! ବିଦାୟ ସମ୍ଭାର,
ନ ଜାଣେ କି ଦେବି ନିଅ ଅଶ୍ରୁ ନମସ୍କାର ।

[୧୯୩୭]

---

## ଭିକ୍ଷୁଗୀତ—

— ୧ —

ତରଙ୍ଗେ ସେ ତରଙ୍ଗ ରହେ
ଜାଲ ଫାନ୍ଦେ ନ ଦଏ ଧରା,
ଅଭିମାନ ଗରବ ଜାନେ
ପଛୁ ଫେର କରେ ଠାପରା ।
ତା ଇଙ୍ଗିତେ ହସଇ ଫୁଲ,
ଉଷାଲୋକ ନିତ ଅକୂଳ,
ସମୀରଣ ବିଜୟ ବାଣୀ
ଦିବା ରାତ ଘୋଷଇ ପରା ॥ ୧ ॥

ବ୍ୟଥା ଅଶ୍ରୁ ଦୁଃଖ ଅରତେ,
କହ୍ନ କବା ଯାଏ ସ୍ବପତେ,
ପରାଣର ଶୋଣିତ ଦାନେ
କଟେଣି ଜନ ଶୋକ ପସରା ।। ୨।

ସରସୀରେ ଢେଉକୁ ଦଳ,
ସାତ ତନ୍ତୁ ଫୁଟେ କମଳ,
ନ ଦଶିଲେ ମୃଣାଳ ଜଳ
ଭେକା ହଂସ ଫେରେ କି ଭଲ ? ।୩।

ବୁଡ଼ିଲେଟରେ ସାଗର ନୀରେ,
ମାଣିକ୍ୟର ସନ୍ଧାନ ମିଳେ,
ସମ୍ଭବ କି କନାରେ ବୁଲି
ମୃତ୍ୟୁ ତମ୍ଭେ ଜୀବନ ଖରା ? ୪।

ଏ ମରତ ବିଷମ ବାଜି,
କେତେ ଅଜ ରହିବୁ ମଜି ?
ବୁଡ଼ିଯା ତୁ ସାଗର ନୀରେ
ହସେ ପଛେ ମରଣ ଜରା ।୫।

ତୋ ପରାଣ ନିଗମ ପୁରେ,
କବା ଧ୍ୱନି ସ୍ଫୁରେ ମଧୁରେ,
ସବୁ ଶୂନ୍ୟ ଜଠର ଭର
ଜଏଁ ତମେ ତପନ ତରା ।। ୬।

---

୨—ନିଶବଦ ଶାରଦ ପ୍ରାତେ
ଅତଥି କେ ଗଲାରେ ଗାଇ ।
ବଣି ତୋର ଅନଳ ଖେଳ
ଫେରି ଥରେ ଗ୍ଳହିଁଲ୍ଲ ନାହିଁ ।

ଶୁଣି ତାର କରୁଣ ଭାଷା
ଫୁଲେ ଫୁଲେ ଖେଳିଲା ଆଶା;
ଥିର ହେଲା ବାଉଦ ବେଳା
ଥିର ଜଷା ରହିଲା ଗୁହିଁ ।
ଫେର ଥରେ ଗୁହିଁଲୁ ନାହିଁ ?୧।
ସବୁଟା ତୋ ଦେଉଳ ତୋଳା,
କାହା ଲାଗି ତୁ ଶର ଭୋଳା—
ଭରମୁ ସାଗର ବେଳାରେ
କି ଭାବନା କଲୁରେ ବାଇ ?
ଫେର ଥରେ ଗୁହିଁଲୁ ନାହିଁ ।୨।
ଦୂର ପଥ ତୁ ବଇରାଗୀ,
କେତେ ଦାଗେ ହେଲୁରେ ଦାଗି,
ଅକୂଳେ ସେ ମାଣିକ୍ୟ ଖୋଜୁ
ଏଥି ସେବା ମିଳଇ କାହିଁ ?
ଫେର ଥରେ ଗୁହିଁଲୁ ନାହିଁ ?୩।
ଦାନ୍ତ ଦାନ ଯାଏ ରେ ବନ୍ଧୁ,
ଦୀନତା ତୋ ନୁହଇ କନ୍ଧୁ,
ନାବ ତୋର ଦଅ ତୁ ମେଲି
ଭବ ନଦୀ ସଙ୍କେତ ପାଇ ।
ଫେର ଥରେ ଗୁହିଁଲୁ ନାହିଁ ? ୪।
ଟେସ ସେ ଦୀପ ରଖିଛୁ ଜାଳି,
ସଯତନେ ତଇଲ ଢାଳି,
ନୀରବରେ ଅଚରେ ଗୁହଁ
କ୍ଷୀଣ ତେଜ ଯିବ ମିଳାଇ ।
ଫେର ଥରେ ଗୁହିଁଲୁ ନାହିଁ ? ୫ ।



[ ୧୯୩୭ ]

## ରୂପ ପରିଚୟ

ହେବାରୁ ସେ ରୂପପଦ୍ମ ବିଶ୍ୱେ ପରକାଶ,
ମଙ୍ଗଳର ଅଶୀର୍ବାଦ ଅନ୍ତରେ ବିଶ୍ୱାସ ।
ଜୀବନ ଅମୃତ କଣା ରହୁଛି ବା ଲୁଚି
ସକଳ ପ୍ରାଣିର ପ୍ରାଣେ ନୋହି ଦିଏ ସାଚି !
ବିଶାଳ ସାଗରେ କ୍ଷୀଣ ବିନ୍ଦୁ କ୍ଷଣିକର
ମାତର ଅବ୍ୟକ୍ତ ରୂପ ଅପୂର୍ବ ସୁନ୍ଦର !
ରୂପ ପୁଣ୍ୟପ୍ରଭା ବଳେ ପ୍ରାଣ ଲଭେ ଗତି,
ଶିବ ସୃଷ୍ଟି ଉଦ୍ଦେଶ୍ୟେ ମୁଁ ଢାଳଇଁ ପ୍ରଣତି !
କ୍ଷଣିକର ପୁଷ୍ପ ତୁମେ ? କ୍ଷଣିକ ସୌରଭ ?
ମାତର ନୁହଇ ଭୁଲି ଅମୃତ ଗରବ ।
ଅମୃତ ପ୍ରମାଣି ତୁମେ, ତୁମର ଇଙ୍ଗିତ
ସହଜ କରଇ ପ୍ରାଣେ ପରମ ଅସ୍ତିତ୍ୱ ।
ରୂପରାଣି ! ଘେନ ମୋର ପ୍ରଣତି ବିନୟ,
ରୂପ ସଙ୍ଗେ ଅଜ୍ଞ ଲଭ୍ୟ ଆତ୍ମ-ପରିଚୟ !

...o...

## * ବନ୍ଦୀ ଅପର୍ଣ୍ଣା

୧—ଦରିଦ୍ର ଦେଶର ଶିଳ୍ପୀ ଦୃଷ୍ଟି ଅନ୍ତରାଳେ,
ଜନମି ମୃଦୁଳ ଅଙ୍ଗି ଲେଖା ଥିଲ ଭାଲେ ।
ଲେଖିଲ ବା ନାହିଁ କାଳ ଅମର ଅକ୍ଷରେ,
ତୁମ କୀର୍ତ୍ତି ଗାଥା, କେହି ନ ପୁଛୁବେ ଥରେ ।

* ପାରଳାର ସ୍ୱର୍ଗତ ଅନ୍ଧଗାୟକ ।

ନ କରବେ ତୁମେ ଯାଚୀ ଅଙ୍ଗୁଳି ନିର୍ଦ୍ଦେଶ,
ତୁମର ସମାଧି ଗୃହଁ ବସ୍ତୁ ଅବଶେଷ ।
କ୍ଷଣିକ ମୂର୍ଚ୍ଛନା ତୁମେ, ପାର ନ ସମଜି
ଜୀବନ ରହସ୍ୟ, ଯୌବନେ ଶୂନ୍ୟେ ଗଲ ହଜି ।
ଲଭ ସ୍ଥାନ ସେ ଜୀବନେ କରିବା ଗଣନା—
କିବା ଫଳ ? ଉଠିଲି ମୋତେ ପଡ଼ୁନାହିଁ ଜଣା !
ନୀରବେ ଜନମି ନିଃସ୍ୱ ନିଭିଲ ଗୋପନେ,
ମାତର ଏକଇ କଥା ନିବେ ନାହିଁ ମନେ,—
ଅଙ୍କାରେ ଅଲେଖ ଅଛି ଅମୃତ ଏ ପ୍ରାଣି
ସୁଲଭ ଅନନ୍ଦେ ତହିଁ ପରମ ପ୍ରମାଣ !

୨—କାନନ-ମଲ୍ଲିକା ଅବା ଶ୍ମଶାନ-ତୁଳସୀ,
କାବ୍ୟ-କୁଞ୍ଜେ କବିକୁଳ କଳ୍ପି ଥାନ୍ତୁ ବସି,
ମୋ ନୟନେ-ମୋ କଳ୍ପନା ନୋହୁ ପଛେ ଯେନା,—
ରୁଧିର ଅମ୍ଳୁତ ଅମ୍ଳା ଉନ୍ନକାନ୍ତ ସେନା !
ଯୁଝିଛ ଅକ୍ଲାନ୍ତ ପ୍ରାଣେ, ଲଭିନାହିଁ ଖ୍ୟାତି,
ଲକ୍ଷ ନିପୀଡ଼ନେ ଥରେ ଦମିନାହିଁ ଜ୍ଞାତି ।
ନିଷ୍ପେଷଣ ବ୍ୟଥା ଯେତ ସେ ବୀଣା ଝଙ୍କାରେ,
ହୋଇଛି ସୁନ୍ଦର ଇନ୍ଦ୍ରଧନୁ ପରକାରେ ।
ଦୈନ୍ୟ ବର କଲ ତାକୁ ଗୌରବମଣ୍ଡିତ
ସୁନ୍ଦର ପରଶେ ତବ କାଳିମା କୁଣ୍ଠିତ ।
ନିଃସ୍ୱ ବନ୍ଦୀ, ଧନ୍ୟ ତୁମେ ରାଜ ଦରବାରେ !
ଗାଇ ରାଜ ପ୍ରଶସ୍ତି ସେ ଜୀର୍ଣ୍ଣ ବୀଣା ତାରେ ।
କି ଉଦ୍ଧ ଭାବନା ? ସୁଖେ ମୁଦ ହେ ନୟନ,
ଧନ ମାନ ଖ୍ୟାତି ଦେଖି ଅପଣା ସ୍ୱପନ ।

୩—ଦାରିଦ୍ର୍ୟ ଅଶ୍ରୁରେ ବନ୍ଦୀ ତବ ଅଭିଷେକ
କ୍ଷୁଣ୍ଣ କରି ନାହିଁ ମାନ ତବ ରାଜ ଟେକ ।
ଅପୂର୍ବ ମୂର୍ଚ୍ଛନା ତାନ ସେହି ଜୀର୍ଣ୍ଣ ତାରେ
କୌମୁଦୀବିହାର ପ୍ରାଣ-ଅଶ୍ରୁପାରାବାରେ ।
ନୀରବେ ବହୁଛି ଶିରେ ପୂର୍ଣ୍ଣ ରାଜାଦେଶ
ଚିତ୍ତବୃନ୍ଦାବନେ ନିତ୍ୟ ମାଧୁର୍ଯ୍ୟ ଆବେଶ;
ସେହି ତବ ପୁରସ୍କାର ଜୀବନ ଅନ୍ଧାରେ,
ନୋହୁ ତବ ମୂଲ୍ୟ ଧେନା ମର୍ତ୍ତ୍ୟଦରବାରେ ।
ଧନ୍ୟ ସେହି ଦେଶ ମାଟି ଯାର ଅଧିବାସୀ—
ମରେ ନାହିଁ କେବେ ହୋଇ ଅନ୍ନ ଉପବାସୀ;
ସେ ଦେଶେ ଦାରିଦ୍ର୍ୟ ଦୀକ୍ଷା ପରମ ପ୍ରମାଣ,
ଯହିଁ ନିତ୍ୟ ଲଭେ ନିଃସ୍ୱ ରାଜାର ସମ୍ମାନ,
ସେ ଦେଶେ ନମସ୍ୟ ତୁମେ । ତବ ଅବସାନ
ଅଶ୍ରୁ-ଅନ୍ଧକାରେ ଆଣେ ଆଲୋକ ସନ୍ଧାନ ।

[ ୧୯୩୬ ]

---

## ଦେଶସେବା

୧—ଦେଶସେବା ନାମେ ଆତ୍ମପ୍ରତିଷ୍ଠା ପ୍ରସ୍ତାର,
ନୁହଇ କି ପୌରୁଷର ଘୃଣ୍ୟ ବ୍ୟଭିଚାର ?
ନାହିଁ କି ସମ୍ଭ୍ରମ ଲଜ୍ଜା ନୀତି-ଭୟ ମନେ ?
ସ୍ଖଳିଲନ୍ତି ସେତେ ପଛେ ତହିଁ ମଧ୍ୟେ ଜଣେ—

ନୁହନ୍ତ ମାନବ କେହୁ ! ମୂକ ପଶୁ ସମ
ସରଳ ବିଶ୍ୱାସ ନିଷ୍ଠା ଏକାନ୍ତ ଧରମ ।
ଅଛୁ ନା ସାହସ ବୀର୍ଯ୍ୟ ମାନବ-ନାୟକ,
ତାଙ୍କର ଚାଳକ ହେବ, ତାଙ୍କରି ସେବକ ?
କରିବଟି ପ୍ରାଣପାତ ତାଙ୍କରି ସେବାରେ ?
ଦେବନା ଶୋଣିତ ପିଣ୍ଡ ଦୁର୍ଦ୍ଦିନ ଅନ୍ଧାରେ ?
ଅଛୁ ବା ଯୋଗ୍ୟତା ମନେ କରିଅଛ ପୁଚ୍ଛା ?
ଅବା କ୍ରୀଡ଼ା ଶେଷେ ଆତ୍ମରକ୍ଷା ପଛଧୂଆଁ ?
ଭୁଲନା ଅଜ୍ଞାନ-ଦଣ୍ଡ-ବଚନ-ବିଧାନ !
ସହସ୍ର ହେଳତ ପ୍ରାଣେ ସୁପ୍ତ ଭଗବାନ ।
୨—ଅନ୍ଧକାର ଯାତ୍ରୀ ଯେବା ଜାଣିନାହିଁ ଚାଲି,
ପଦେ ପଦେ ଝୁଣ୍ଟିବାର ଲୋକହସା ଗାଲି ।
ଅଜ୍ଞାନର ଦର୍ପେ ଯେବା କାଟିଛୁ ଜୀବନ,
ଆତ୍ମଘାତୀ ହୋଇ ଆନେ କରଇ ବିପନ୍ନ ।
ଯାଉନି ଶୈଶବ ଯାର ହାତେ କ୍ରୀଡ଼ନକ,
ଧୃଷ୍ଟତା ନୁହେ କି ହେବା ଆନର ଚାଳକ ?
ବିଷମ ମାୟାରେ ଯାର ଚକ୍ଷୁ ବିଜଡ଼ିତ,
ଦୂର ସିନ୍ଧୁରୋଳ ଶୁଣି ମୁଗ୍‌ଧ ପୁଲକିତ,
କାହୁଁ ସେ ଜାଣିବ ପାଶେ ନାଗପାଶ କଥା ?
ବାସ୍ତବ-ସମ୍ପର୍କ ଶୂନ୍ୟ ଜୀବନର ବ୍ୟଥା ?
ବିପନ୍ନ କାତର ବନ୍ଧୁ ଜୀବନ ନିୟନ୍ତା,
ଦୁର୍ଗମ ଅନ୍ଧାର ପଥେ ଶୁଦ୍ଧ ତୁମ କଥା ।
ନିଃସ୍ୱ ଏ କାତର କର ଧରି ଭଗବାନ,
ବିପଥ ଗମନୁଁ ତୁମେ କର ପରିତ୍ରାଣ ।



# ପ୍ରୀତପରିହାସ

ପ୍ରସ୍ଫୁଟିତ ଉପବନେ ନାନାଜାତି ଫୁଲ,
ଉଦ୍‌ବେଳିତ ପ୍ରାଣ ପାନରସ-ସମାକୁଳ ।
ଅଥବା ତାରୁଣ୍ୟ ହାସ ଜୀବନ ପ୍ରବାହ,
ପ୍ରଶାନ୍ତ ଆନନ୍ଦ ପ୍ରଭା ନାହିଁ ଗାନଦାହ ।
ମୁଗ୍‌ଧ ନୟନେ ଚାହିଁ ବସି ନେଇ ବେନି ସିକ୍ତ,
ଭାବିଲେ ଅତୀତର ସ୍ୱପ୍ନ ! ଆଜି ମୂର୍ଦ୍ଧା ରିକ୍ତ !
ମନେପଡ଼େ ଦିବ୍ୟ କାନ୍ତି କୁସୁମ ଭୂଷିତ—
ପରିପୂର୍ଣ୍ଣ ପ୍ରାଣରସେ ତୃଣେପ୍ସୁ ହସିତ !
ଜୀବନ୍ତ କୁସୁମ ସମ ସୁନ୍ଦର ସମ୍ପୂର୍ଣ୍ଣ,
କାଳର ଶୀତଳ ସ୍ପର୍ଶେ ଆଜି ତାହା କ୍ଷୁଣ୍ଣ ।
ସକଳ ମାଧୁର୍ଯ୍ୟ ରସ ସକଳ ନବୀନ,
କେମନେ କରଇ କାଳ ଅକାଳେ ମଳିନ,
ଭାବୁଥିଲି ବସି ବସି ! କ୍ଷଣେ ରୁଗ୍‌ଣ ପ୍ରିୟା—
କ୍ଷୀଣ ଡାକେ, "ଔଷଧଟା ହେଲନାହିଁ ଦିଅ;
ବେଳ ଯେ ଯାଉଛି ଗଡ଼ି, ନ ପାରଇଁ ଚାଲି,
ହାୟ ମନ ବାଧୁ ! ଜାଇଁଥାଉ ସା ନ ମଲି ।
କେଉଁ ଆଡ଼େ ଗଲ ଅବା ?" ଉଠିଲି ଚମକି—
ଅପରାଧୀ ସମ ଗଲ କଲ୍ପନା ଅଟକି ।
କହିଲି, "ଯାଇନି କାହିଁ ଦେଖୁଥିଲି ବସି,
ଫୁଟିଅଛି ଫୁଲ ଯେତେକ ସହସ୍ର ରୂପସୀ—
ବୃନ୍ତବନ୍ତ ସ୍ୱପ୍ନ ଜାଲ !" କହେ ଶୁଷ୍କ ହାସେ—
"ଦେଖିନ ମରଣ ତାର ହସୁଥିଲା ପାଶେ ?

ଦେଖିନାହିଁ, ଯେବେ ଦେଖି ଆସ ଅଜ୍ଥରେ,
ସଜ୍ଜିତ ଔଷଧ ଶିଶି କ୍ରୂର କାଳ ଡରେ ।"
ପ୍ରିୟା ପରିହାସେ ଅଶ୍ରୁ ସିକ୍ତ ଉଠେ ଫୁଲ,
ସ୍ନେହେଁ ମୁଗ୍ଧ ନେନେ କରୁଁ ଖସିପଡ
ଶିଶିରୁ ଔଷଧ ଢାଳେ, ଝରଇ ଲୋତକ,
ହସି ଉଠେ ଯେହ୍ନେ ମୃତ୍ୟୁ ସୃଷ୍ଟି ନିୟାମକ !
ଭୁଲିଲି ମୋ କୁସୁମ କଥା ! ପାରିବିନା ଧରି—
ମରଣ ସେ ଫୁଲ ଦେଲା ଅଭିନବ କରି ?
ହସି ପୁଣି କହେ ପ୍ରିୟା "ସେହି ଭାଗ୍ୟବାନ ।
ମୃତ୍ୟୁ ଅଶ୍ରୁ ଅନ୍ଧକାରେ ଲଭେ ସେ ପରାଣ !"

[୧୯୩୬]



## ଦଣ୍ଡବିଧାନ

ନିର୍ବୋଧ ଶିଶୁରେ କରି ନିଷ୍ଠୁର ପ୍ରହାର,
ଅଶ୍ରୁ ତାର ହେଲା ମୋର ହୃଦ ରକ୍ତଗାର !
ଯେଣିକି ଚାହିଁଲେ ଦେଖେ ବିଷଣ୍ଣ ବଦନ
କାତର ନୟନଭଙ୍ଗୀ, ରୁଦ୍ଧ ତା କ୍ରନ୍ଦନ !
ପଢ଼ପକ୍ୱ ଅକ୍ଷରର ପାରିନାହିଁ କହି
ନୀରବେ ମୋ ଅତ୍ୟାଚାର ନେଲା ଢେଣୁ ବହି,
ତାର କ୍ଷୁଦ୍ର ଶିରେ, ଥରୁଥିଲା କ୍ଷୀଣ ଗାଏ !
ଅହତ ନୟନ ତାର କରେ ଶେଳାଘାତ—
ମୋ ସର୍ବାଙ୍ଗେ ! ସ୍ମୃତି ଭୁଲି ହେଉନାହିଁ ଥର
ବିବେକ ବସ୍ତ୍ରର ବୃଦ୍ଧି ଯନ୍ତ୍ର ଲକ୍ଷାଘରେ !

# ସ୍ମୃତିପରିହାସ

ପ୍ରସ୍ଫୁଟିତ ଉପବନେ ନାନାଜାତ ଫୁଲ,
ଉଦ୍‌ବେଳିତ ପ୍ରାଣ ପାନରସ-ସମାକୁଳ ।
ଅଥବା ତାରୁଣ୍ୟ ହାସ ଜୀବନ ପ୍ରବାହ,
ପ୍ରଶାନ୍ତ ଆନନ୍ଦ ପ୍ରଭା ନାହିଁ ଗାନଦାହ ।
ମୁଗ୍‌ଧ ନୟନେ ଚାହୁଁ ବସି ନେତ୍ର ବେନି ସିକ୍ତ,
ଭାବିଲି ଅତୀତର ସ୍ୱପ୍ନ ! ଆଜ ମୁହିଁ ରିକ୍ତ !
ମନେପଡ଼େ ଦିବ୍ୟ କାନ୍ତି କୁସୁମ ଭୂଷିତ—
ପରିପୂର୍ଣ୍ଣ ପ୍ରାଣରସେ ତ୍ରଣେସ୍ମ ହସିତ !
ଜୀବନ୍ତ କୁସୁମ ସମ ସୁନ୍ଦର ସମ୍ପୂର୍ଣ୍ଣ,
କାଳର ଶୀତଳ ସ୍ପର୍ଶେ ଆଜ ଯାହା ଚୂର୍ଣ୍ଣ ।
ସକଳ ମାଧୁର୍ଯ୍ୟ ରସ ସକଳ ନବୀନ,
କେସନେ କରଇ କାଳ ଅକାଳେ ମଳିନ,
ଭାବୁଥିଲି ବସି ବସି ! କ୍ଷଣେ ରୁଗ୍‌ଣ ପ୍ରିୟା—
କ୍ଷୀଣ ଡାକେ, "ଔଷଧଟା ହେଲନାହିଁ ଦିଅ;
ବେଳ ଯେ ଯାଉଛି ଗଡ଼ି, ନ ପାରଇଁ ଚାଲି,
ହାୟ ମନ୍ଦ ବିଧି ! ଜୀଇଁଥାଉ ଯା ନ ମଲି ।
କେଉଁ ଆଡ଼େ ଗଲ ଆବା ?" ଉଠିଲି ଚମକି—
ଅପରାଧୀ ସମ ଗଲି କଳ୍ପନା ଅଟକି ।
କହିଲି, "ଯାଇନି ତାହିଁ ଦେଖୁଥିଲି ବସି,
ଫୁଟିଅଛି ଫୁଲ ଯେହ୍ନେ ସହସ୍ର ରୂପସୀ—
ବୃଣ୍ଟବନ୍ତ ସ୍ୱପ୍ନ ଜାଲ !" କହେ କ୍ଷୁଣ୍ଣ ହାସେ—
"ଦେଖିନ ମରଣ ତାର ହସୁଥିଲି ପାଶେ ?

ଦେଖିନାହିଁ, ଯେବେ ଦେଖି ଆସ ଅଭ୍ୟରେ,
ସଞ୍ଚିତ ଔଷଧ ଶିଶି କ୍ରୂର କାଳ ଡରେ ।"
ପ୍ରିୟା ପରିହାସେ ଅଶ୍ରୁ ସିକ୍ତ ଉଠେ ଫୁଲ,
ଗୃହେ ମୁଗ୍ଧ ନେବେ କରୁଁ ଖସିପଡ଼
ଶିଶିରୁ ଔଷଧ ଢାଳେ, ଝରଇ ଲୋତକ,
ହସି ଉଠେ ଯେହ୍ନେ ମୃତ୍ୟୁ ସୃଷ୍ଟି ନିୟାମକ !
ଭାବିଲି ମୋ କୁସୁମ କଥା ! ପାରିବିନା ଧରି—
ମରଣ ସେ ଫୁଲ ଦେଲା ଅଭିନବ କରି ?
ହସି ପୁଣି କହେ ପ୍ରିୟା "ସେହୁ ଭାଗ୍ୟବାନ ।
ମୃତ୍ୟୁ ଅଶ୍ରୁ ଅନ୍ଧକାରେ ଲଭେ ସେ ପରାଣ !"

[୧୯୩୭] 

## ଦଣ୍ଡବିଧାନ

ନିର୍ବୋଧ ଶିଶୁରେ କରି ନିଷ୍ଠୁର ପ୍ରହାର,
ଅଶ୍ରୁ ତାର ହେଲା ମୋର ହୃଦ ରକ୍ତାଗାର !
ଯେଣିକି ଚାହିଁଲେ ଦିଶେ ବିଷଣ୍ଣ ବଦନ
କାତର ନୟନଭଙ୍ଗୀ, ରୁଦ୍ଧ ତା କ୍ରନ୍ଦନ !
ପଦେପଦେ ଅବିଚାର ପାରିନାହିଁ କହି
ନୀରବେ ମୋ ଅତ୍ୟାଚାର ନେଲା ଦେଖୁ ବହି,
ତାର କ୍ଷୁଦ୍ର ଶିରେ, ଥରୁଥିଲା କ୍ଷୀଣ ଗାତ୍ର !
ଅହତ ନୟନ ତାର କରେ ଶେଲାଘାତ—
ମୋ ସର୍ବାଙ୍ଗେ ! ଧୂର୍ତ୍ତ ଭୁଲି ହେଉନାହିଁ ଥରେ,
ବିବେକ ବିଚାର ବୁଦ୍ଧି ସୁପ୍ତ ଲଜ୍ଜାଭରେ !

ସଙ୍କୀର୍ଣ୍ଣ ବିଶ୍ବର ଦମ୍ଭେ କରଇଁ ଧିକ୍କାର,
ଅସ୍ବୀକୃତ ପାପ ହେତୁଁ କାହିଁ ବା ଉଦ୍ଧାର ?
"ଅଜ୍ଞାନର ଭ୍ରମ ଲାଗି ସେ ଦଣ୍ଡ ବିଧାନ !
ବିବେକୀ ଦୁଷ୍କୃତ ଲାଗି କିବା ପରିଣାମ
ଭାଳିଛ କି ଥରେ ?" ପୁଚ୍ଛେ ସନ୍ତାନ ଜନନୀ,
ଦେବି କି ଉତ୍ତର ମନେ ପାରୁନାହିଁ ଜାଣି !
ବିଶ୍ବରର ଅପରାଧ ପୀଡ଼ଇ ବିଷମ,
ହରିବ କିଏ ସେ ମର୍ତ୍ତ୍ୟ ଅନ୍ତର ଦହନ ?
କରିଛି ବିଶ୍ବର ଯାର ସେ ମୋ ବିଶ୍ବରକ
ଅହତ ନୟନ ତାର ଅଯୂଧ ଫଳକ !



## ହରିଜନ !—

ମଳିନ ଭୂଷଣ ପୁଣି ନୀଚକୁଳେ ଜାତ,
ମାତର ପଡ଼ଇ ମନେ ମଙ୍ଗଳ ପ୍ରଭାତ,
ଶାରଦ ଶିଶିର ସ୍ନାତ ଗୁହିଁ ନେତ୍ର ଠାଣି,
ଧନ୍ୟ ସିନା ସେହି ତୁମେ ଯାର ପ୍ରାଣେଶ୍ବରୀ !
କୁତ୍ସାରୂପ ହୀନା କହି କରେ ସେ ଫୁତ୍କାର,
ଅସ୍ପୃଶ୍ୟକାରୀ କରେ ଘୋର ଅବିଶ୍ବର—
ଅପଣାର ପ୍ରୀତି ! ଜାଣେ ନାହିଁ ଅକିଞ୍ଚନ—
ସେ ରୂପେ ଉଜ୍ଜ୍ୱଳ ଦେବତାର ସିଂହାସନ ।
ପରମ ମଙ୍ଗଳ ସୌମ୍ୟ ଅନନ୍ଦ ସନ୍ଦେଶ
ବହିଅଣେ ତବ ନେତ୍ର ଦିଏ ନାହିଁ କ୍ଲେଶ;

ମରୁଦ୍ୟାନ ସମ ପାନ୍ଥ ନେଇ ପ୍ରୀତିଭର,
ଚିର କ୍ଳାନ୍ତ ହର ଚିର ପ୍ରଶାନ୍ତ ସୁନ୍ଦର ।
ବିପଥ ପଥିକ ତୀବ୍ରତମ ତୃଷା ହରି,
କହ୍ନଦଏ ଯାତ୍ରା ପଥ ନେଇ ନେଇସୁନ୍ଦରି !

## ବିଜୟା

ଶୋଣିତ ଅପ୍ଳୁତ ଶତ ସତ୍ୟସେନା ଏ ଜାତିର ପ୍ରାଣ,
ବିଜୟ ଗୌରବେ ତବ ଧେନ ଦୀନ ମାଙ୍ଗଳିକ ଗାନ ।
ଦୀର୍ଘ ଅମା ଅବସାନେ କ୍ଷୀଣ ଊଷା ଅଲୋକ ସଞ୍ଚାର,
ସଂଗ୍ରାମ ଉପତଦଦ୍ଧ ଧରି ପରେ ପ୍ରଥମ ଅହାର !
ସେ ପ୍ରଶାନ୍ତ ସନ୍ଧ୍ୟା ସମ ସୁନ୍ଦର ତୁମରି ଜୟଯାତ୍ରା,
କୋଟିମୁଗ୍ଧ କଣ୍ଠ ଗାଏ "ଜୟ ହେ ଭାରତ-ଭାଗ୍ୟଧାତା !"
ପୋଛୁନ ଦୁର୍ଦ୍ଦିନ ଅଶ୍ରୁ, ଏ ଜାତିର ଲଗିନ ପରଶ,
ସଂଗ୍ରାମର କ୍ଷତ ଦାହେ ! 'ପଛଦୁଆ ଦୀନ ଅଦରଣ !'
ନିଃସ୍ବ ଏ ଜାତିର ଶତ ମର୍ମଭେଦ ଗ୍ଳାନ ଅତ୍ୟାଚାର,
ପକାଇ ପଛକୁ ବୀର ଶୋଣିତକୁ କରିଛ ଫୁଲ୍ଲାର ।
ଶୁଣିଛ ଅଧିକ୍ଷ ଡାକ, ହୃଦେ ଏ ଜାତିର ଦୈନ୍ୟ ବୋଧ,
ଭୁଲିଛ ଏକଇ ନିଷ୍ଠା, ଅସତ୍ୟ—ଲଙ୍ଘିନା ପ୍ରତିଶୋଧ ।
ଡରନାହିଁ ମରଣକୁ ନିର୍ଯ୍ୟାତନ ତବ ଗାତ୍ର ଧୂଳି,
ଅବିଚଳ ନିଷ୍ଠା ଧୈର୍ଯ୍ୟ ତ୍ରିରଙ୍ଗ ପାଦୁ ନିଷ୍ଠୁର ଶାକୋଳି ।
ଦରିଦ୍ର ଜାତିର ଆଶା, ହେ ଦୁର୍ଜୟ ନୟନ ସମ୍ପତ୍ତି,
ଦିଗ୍‌ବିଜୟ ଯାତ୍ରାପଥେ ଦେଖ ନିଃସ୍ବ-ସ୍ମରଣ-ପ୍ରଣତି ।
ଜୟ ହେଉ ଅଭିଯାନ ! ଅଗ୍ରସର, ପୁଣି ଅଗ୍ରସର !
ସୈନିକ ଜାଣଇ ମୃତ୍ୟୁ, ପୁଣି ଜୟ ! ନୁହେ ଅବସର ।

ଭେଦିଛ ଏକଇ ବ୍ୟୂହ, ଷଡ଼ବ୍ୟୂହ ଦଶଇ ସମ୍ମୁଖେ !
ଅଯୂତ ଅମ୍ଳୀପ୍ସୁ ମୂକ ପଣ୍ଣ ସମ ଗ୍ଲାନ୍ତ ଉତ୍ସ୍ରୁତଙ୍କ ।



## * ପ୍ରୀତିସ୍ୱରୂପ !

ପ୍ରୀତି ନାମେ ପ୍ରାଣ ତୁଲେ ଲଗାଇଛ ଖେଳା,
ପୀରତି ପାଳନା ନୁହେଁ ପ୍ରାଣ ଅବହେଳା ।
ପ୍ରୀତି ନୁହେ ରକ୍ତ ମାଂସ ବିଳାସର କ୍ରୀଡ଼ା,
ପ୍ରୀତି ଲତା ଅନ୍ତରାଳେ କୁସୁମର ବ୍ରୀଡ଼ା ।
କୁତ୍ସିତ ସୁନ୍ଦର କେବା ପ୍ରୀତି ବିପଣୀରେ,
ଟଣ୍ଣୁ ଯିବ ବେଳା, ଲଭ୍ୟ ନୁହେଁ ତୃଣ ମୀରେ ।
ଭଲ ପାକୁ ଇଚ୍ଛେ ମନ କାଳେ ହୁଏ ଭେଲ,
ଲୋଭନୀୟ ପ୍ରଦୀପଟି ନାହିଁ ‘ବିନ୍ଦୁ ତେଲ,
ଆତ୍ମ ଅବମୂଲ୍ୟତାରେ ଗୃହ ଅନ୍ଧକାର
ଅବା ସାର ହୁଏ ପ୍ରାଣେ ସହସ୍ର ବିକାର ।
ବହିଯାଏ ବେଳା ମାତ୍ର ହୁଏ ନାହିଁ ପୂଜା,
ଚପଳ ପ୍ରଜ୍ଞାରେ କାହିଁ ଗୂଢ଼ ତତ୍ତ୍ୱ ବୁଝା ?
ଭଗ୍ନ ପ୍ରଣୟିନୀ, ପ୍ରାଣ ମାଗର ଅଭଗ୍ନ,
ପ୍ରାଣେ କାହିଁ ବଡ଼ ସାନ ? ନତ ହୁଅ ଦୀନ ।
ଅରୁଚି ସେ ରୂପ ତୋର ଦେଖିଛୁ କି ଥରେ,
ସୁବର୍ଣ୍ଣ ପ୍ରଦୀପ ଅଭ୍ର ନିଭୃତ ଅନ୍ତରେ ?
ତା ଅଶ୍ରୁ ମୁକ୍ତା ହାର ଅମୂଲ୍ୟ ସମ୍ପଦ,
ଚିହ୍ନସ ଗ୍ରାହକ ନୋହି କରୁ ଆତ୍ମବଧ ।
ପରମ ପୀରତି ଯହିଁ ସୁଲଭ ପ୍ରଣୟୀ,
କାଚ ଭଲ ମଣି ଫିଙ୍ଗି ପଛେ ହେବୁ ଦହି ।

* କୌଣସି ତରୁଣ ପ୍ରଣୟୀଙ୍କ ଉଦ୍ଦେଶ୍ୟରେ ।

ପୀରତରେ ନାହିଁ ଥିଲେ ଅଳଙ୍କାର ସାତ
ଅଳଙ୍କାର ହୋଇ ବଢ଼ାଇଲୁ ଅସ୍ୱସ୍ତି,
ସ୍ୱଳ୍ପଜ୍ଞାନ କଷଟିରେ ପ୍ରୀତ ନୁହେଁ ଧରା,
ପ୍ରାଣ ଗାଏ ଦୁଏ ଦନ୍ଦ ଦାନ ବସୁନ୍ଧରା
ନୀରବ ନିଗମ ସୂତ୍ରେ ପୁଣ୍ୟ ପ୍ରାଣ ପୂଜା,
ତେବେ ହେ ପ୍ରଣୟୀ ପ୍ରୀତ ତତ୍ତ୍ୱହେବ ବୁଝା,
କୁଳେ ବୁଲି ନିତ ନିତ ତେଜ ଗଣିବାର—
ଅଶୋଭନ ବୁଡ଼ ଜଳେ, ଡାକେ ପାରାବାର ।
ଗରଳକୁ ଖୁଣି କରୁ ଅମୃତ ଭରମ,
ଗ୍ରୁପଲ୍ଲୀ ବୁଝଇ କାହିଁ ସେ ତତ୍ତ୍ୱ ନିଗମ ?



## ପ୍ରଣୟ ଲିପି

କ୍ଷୁଦ୍ର ଜୀବନର କ୍ଷୁଦ୍ରତମ ଇତିହାସ,
ଭସ୍ମ କଲ ! ଅଗ୍ନିଶିଖା କଲ ହେଲେ ଗ୍ରାସ !
ସେଥିଲାଗି ପ୍ରଣୟିନୀ ନେଣ ଛଳ ଛଳ,
ଆପଣା ଅନ୍ତରେ କଳ୍ପି ଶତ ଅମଙ୍ଗଳ !
ସେ ଗର୍ହିତ କର୍ମ ଆଜ ଦୂରେ କରିବାର,
ଅତୀତ ପ୍ରଣୟ ସ୍ମୃତି-ପୂଜାର ଆଧାର—
ଭସ୍ମ-କଲପନା ପାପ ! ତେଣୁ ମୁଖ ଭାର !
କହିଲି ମୁଁ ହସି "ଅଗୋ ତୁଚ୍ଛର ପୂଜାରୀ !
ତୁହି ଥରେ ମୁଖ ଟେକ ହୋଇଣି ଜୀବନ
ପଡ଼ି ରହିଅଛି ଦୀର୍ଘ ଜୀବନର ପଥ !

ପାର୍ଶ୍ୱେ ପ୍ରମୋଦ ଉଦ୍ୟାନ, କେତେ ଛାୟାବୀଥୀ,
ନିତ୍ୟ ନୂତନ ପ୍ରଣୟ ଫୁଲ ଫୁଟେ ନିତି;
ତା ପାଶେ ଝଙ୍କର ମରୁ ! ଭୁଲ ଗୋ ସୁନ୍ଦରୀ—
ପାରିବଟି ତହିଁ ପ୍ରୀତି ନିତ୍ୟ ନବ କରି ?
ସେ ନିତ୍ୟ ପ୍ରଳୟ ଲାଗି ହୁଅ ଗୋ ପ୍ରସ୍ତୁତ
ଅଦ୍ଭୁତ ଜୀବନେ ନିତ୍ୟ ପ୍ରଣୟ ଅଦ୍ଭୁତ !
ପୁରାତନ ଅତୀତ ଯା ସେ ତ ତୁଚ୍ଛ ଅତି,
ସୁଦୂର ଭବିଷ୍ୟେ ତୁହି ଢାଳ ଗୋ ପ୍ରଣତି !
ନିତ୍ୟ ଉଷା ନବ ପ୍ରୀତି ନବୀନ ଯୌବନ,
ଭବିଷ୍ୟ ଆନନ୍ଦ ତୁହି ଭୁଲ ପୁରାତନ !
ଉସ୍ ଯାହା ଅସୁନ୍ଦର ତହିଁ ଖେଳିବାର,
ପ୍ରଣୟର ନୁହେ ଅର୍ଥ କଳ୍ପନା ବିହାର;
ବିଶାଳ ଜୀବନ ! କ୍ଷୁଦ୍ର ଅତୀତ ପ୍ରଣୟ !
ଧରିବ କେସନେ କହ କରିବ ବା ଜୟ-
ଦୁର୍ଦ୍ଦାନ୍ତ ସୈନିକ ପ୍ରାଣ ? ବିଜୟର ଲିପ୍ସା-
ଜଳେ ଯେଉଁ ପ୍ରାଣେ ତୁଚ୍ଛ ଫୁଲତୋଳା ନିଶା !
ବିରଳ ଉଦ୍ୟାନେ ସ୍ୱପ୍ନ ପ୍ରଣୟ ବିଳାସ
ଦୁର୍ଦ୍ଦମ ପ୍ରଣୟୀ ମୃତ୍ୟୁ ଗଳା ନାଗ-ପାଶ ।
ପ୍ରଣୟର ମୃତ୍ୟୁ ତୁହି ? ଲୁପ୍ତ ଧନପରି—
ଲୁଚାଇ ରଖିବ କ୍ଷୁଦ୍ର ସମ୍ପୁଟେ ସୁନ୍ଦରି ?
କ୍ଷୁଦ୍ର କେତେ ପ୍ରୀତି-ଲିପି, ତୁଚ୍ଛ ପ୍ରଗଲ୍‌ଭତା,
ଲୁଚାଇବ କାହିଁ ତାକୁ ? ଏତେ ଗୋ ମମତା !
ଆସଇ ବାର୍ଦ୍ଧକ୍ୟ ଶୋଷିବାକୁ ପ୍ରାଣରସ,
ଶୋଷିବ କଳ୍ପିତ ପ୍ରୀତି ସ୍ୱପ୍ନର ଆଦର୍ଶ !

କି କରିବ ତହୁଁ ? ଜଠ ପ୍ରସାର ସେ କର
ରଙ୍ଗି ରୁକ୍ଷ ହାତେ ହାତ ହେବା ଅଗ୍ରସର ।
ପାରିବ ତ ଭୁଲି ଭୁଲେ ? ଦୂରେ ପ୍ରୀତିଶିଖା,
ସେ ପ୍ରୀତିରେ ସତ୍ୟ ହେଉ ଅମୃତର ଦୀକ୍ଷା !"



## ବାସରଫୁଲ

ଯେ କୁସୁମ ଅଜି ବନ୍ଧୁ ଦେଲି, କଲି ଛିନ୍ନ,
ନ ବୁଝିଲି ସରଳ ପ୍ରାଣର ପ୍ରୀତି ଚିହ୍ନ ।
ଯାର ରୂପ ସ୍ପର୍ଶ ଗନ୍ଧେ ହେଲି ଗୋ ବ୍ୟାକୁଳ,
ଦେଖିଛ କି ଅନ୍ତରାଳେ ତାର ଅଶ୍ରୁ ଢଳ ?
ଦେଖି ନାହିଁ ଯେବେ ବନ୍ଧୁ ନାହିଁ କିଛି ଦେଖି ?
ଦେଖ ଯେବେ ସ୍ମୃତିପଟେ ରଖିବଟି ଲେଖି ?
ଅଜ୍ଞାତ ସରଳ ପ୍ରାଣ ପ୍ରଥମ ମିଳନେ,
ଦେଲ ଯେ କୁସୁମ ଧରି ରଖିବଟି ମନେ ?
ସକଳ ମାଧୁରୀ ତାର ହୋଇ ନାହିଁ ଶେଷ,
ତୁଚ୍ଛ ଦଳ ବୃନ୍ତ ଲଭି ତବ ମୋହାବେଶ,—
ଦେଖି ବୁଝିଲି ମୁଁ ଆଜି, ବାସର ଉତ୍ସବ
ସରିଲା ରଜନୀ ଶେଷେ ଯୂଣ୍ଡ ନାଗର୍ବ !
ମଉଳି ନାହିଁ ସେ ଫୁଲ ସରିନି ମାଧୁରୀ,
ବାସର କୁସୁମ ବ୍ୟଥା ଯିବ ନାହିଁ ଭୁଲି ।

[୧୯୩୭]



# କୌଣସି ତରୁଣୀ ଲେଖିକାଙ୍କ ଉଦ୍ଦେଶ୍ୟରେ

ଦରିଦ୍ର ତରୁଣୀପ୍ରୀତି ନୁହେ ବ୍ୟଭିଚାର,
ବୃଥା କ୍ଷମା କର ଜାଣି ଅପବ୍ୟବହାର ।
ଲାଳସାର ପରିତୃପ୍ତି ନୁହେଁ ବାଣୀ ପୂଜା,
ନେପଥେ କ୍ଷୁଧା ରହି କେବେ ହୋଇବ କି ବୁଝା—
ପ୍ରଣୟର ପବିତ୍ରତା ? ପ୍ରାଣର ସୌନ୍ଦର୍ଯ୍ୟ
ତୁମ ବାଣୀ ବ୍ୟବହାରେ କୁତ୍ସିତ କଦର୍ଯ୍ୟ !
ତୁମର ରାକ୍ଷସୀ କ୍ଷୁଧା ଜିହ୍ୱା ଲେଲିହାନ
ଦାରୁଣ କଳପନା ତେଜେ ! ଥରେ ମୂକ ପ୍ରାଣ !
ନାରୀ ହୋଇ ଶିଖି ନାହିଁ ତଳେ ଶିଷ୍ଟାଚାର,
ଚିର ଶୁଭ୍ର ପୂଜ୍ୟ ଛାଡ଼ି କରୁଛ ପ୍ରଚାର—
ନାରକୀ ଧରମ, କରେ ଘାଣ୍ଟୁଛ ନରକ,
ଭାବୁଛ ପ୍ରଣୟୀ ହେବ କଣ୍ଠର ସ୍ତବକ ?
ଶୁଣି ତବ ଉଚ୍ଛୃଙ୍ଖଳ ଲାଳସା ଆହ୍ୱାନ, *
ଲଜ୍ଜିତ ଯେ ଲକ୍ଷ କୋଟି ନରନାରାୟଣ !
ଥରଇ ଦେବତା ଆତ୍ମା ଲଭି ମୃତ୍ୟୁ ବ୍ୟଥା,
କ୍ଷୁବ୍ଧିତ ପ୍ରାଣର ଦେଖି ଅଶ୍ଳୀଳ ନଗ୍ନତା !
ଏ ଭୂମିରେ କୁତ୍ସିତ ଯେ ଅଧର ଦଂଶନ,
ରାଜମାର୍ଗେ ଦିବା ଭାଗେ ପଶୁ ଆକ୍ରମଣ !
ପବିତ୍ର କୁସୁମ ଛାଡ଼ି ଦେବତାର ଶିର,
ନର୍କେ ଲୋଟିବାର ଦେଖି ବହେ ନେତ୍ରନୀର !

[୧୯୩୬]



* ପତ୍ରିକାରେ ଚୁମ୍ବନ, ଆଲିଙ୍ଗନାଦିର ଅବାଧ ଲିପ୍ସା ସୂଚିତ ହୋଇଥିଲା ।

# ଭିକ୍ଷୁଗୀତ

ଭୁଲିଲେ ତୁ କାଲକୁ ଭୋଳା,
କାଲ ତୋତେ ପାରେ କି ଭୁଲି
କେତେ ଦିନ ହେବୁରେ ସଚ୍ଚା,
ଆନ ନେବେ ପଛାଇ ଧୂଳି ?
ଯିବ ଦିନ ସମାନ ତୁ କି
ଯାନ୍ତୁ ? କାଲ ଦେଲେରେ ଫୁଙ୍କି,
ଗପ୍ପାବାଜି ଉଭେଇ ଯିବ
ସନ୍ଧ୍ୟା ମେଘ ଯିବ ମଉଳି
ଧୂଳିରେ ଯେ ରଚିଛୁ ଘର,
ଦିଶେ ନେଇଛେ କି ମନୋହର,
ଅଚିରେ ସେ ପଡ଼ିବ ଟଳି
କାଲ କର ଗଲେ ରେ ବୁଲି । ୨ ।
ଭାବୁ ମନେ ଜୀବନ ନଦୀ,
ବେଗଗତି ଚିର ଅବଧି,
ଭୁଲ ଥରେ ମୁହାଣେ ଚଢ଼ା
ପଥ ତୋର ଦେବ ଅଗୁଳି । ।
ଦୂରଦେଶୀ ପଥିକ ଅରେ
ବସିଲେ ତୁ ଖେଳୁଛୁ ଧାରେ,
ପଥ କେତେ ରହିଛୁ ପଡ଼ି,
ଭୁଲିଗଲୁ ଚିହ୍ନ କି ପୁଳି । ୪ ।



## ଜନନୀ

୧— ଜନନି ଗୋ ଜନମିଲ୍ ବହୁ ଦୁଃଖଦୀକ୍ଷା !
ଦୁଃଖ ଅଶ୍ରୁ ବେଦନାରେ କ୍ଷୁଦ୍ର ପ୍ରାଣଶିଖା—
ନିଭିଲା ଅଜ୍ଞାତେ ! କରନାହିଁ କୋଳାହଳ,
ସଂଗ୍ରାମର କ୍ଷତ ଅଶ୍ରୁ ତୁମରି ସମ୍ବଳ !
ସେ ଶୁଷ୍କ ଅଧରେ ଦିନେ ଫୁଟିବାର ହାସ,
ପଡ଼େ ନାହିଁ ମନେ ! ବନେ ମରେ ଫୁଲ୍ ବାସ,
ମରିଛ ତେସନେ, ପ୍ରାଣେ ସ୍ୱାର କର ତ୍ୟାଗ,
ମୃତ୍ୟୁଠାରୁ ବଳି ବାଧେ ତବ ଅନୁରାଗ !
ନିଶୀଥ ଅନ୍ଧାରେ ବସି ଜାଳିଛ ନୀରବେ
ସୃଷ୍ଟିର ମଙ୍ଗଳ ଦୀପ, ଦେଇଛ ଗରବେ—
ହୃଦୟ ଶୋଣିତ ! ସନ୍ତାନର ମୁଖେ ସ୍ତନ୍ୟ,
ମାରି ଆପଣାକୁ ଅନ୍ୟେ ଦେଇଛ ଜୀବନ !
ସେତିକି ସ୍ମାରକ ତବ ବୁଦ୍‌ବୁଦ୍ ଜୀବନେ !
କରୁଣ ନୟନ-ସ୍ମୃତି ଦହେ ଅନୁକ୍ଷଣେ ।
ଶୁଣିନାହିଁ ଦିନେ କାର ଆଦର ସୋହାଗ,
କେବେ କିନ୍ତୁ ଦେଖିନାହିଁ ଜୀବନେ ବିରାଗ !
ଭାରବାହୀ ପଶୁପରି ବ୍ୟଥା କରି ସାର,
ସକଳ ଦୁର୍ଦ୍ଦିନେ କରି ନାହିଁ ହାହାକାର,
ଚିର ଅବିଚଳ ଚିର ମୂକ ପରବତ,
ସ୍ଫୁରିତ ସେ ମ୍ଲାନ ନେତ୍ରେ ଦୈନ୍ୟର ମହତ୍ତ୍ୱ !
ଶୁଣିନାହିଁ ଏ ଅଧରୁ ତବ ସ୍ତନ୍ୟ ଦାଗ
ଶୈଳସମ ବାଧେ ତେଣୁ ତବ ଅନୁରାଗ !

ଭାବୁଁ ତବ କଥା ଫେରି ଅସେ ମୋ ଶୈଶବ !
କଣ୍ଠ ଫାଟିପଡ଼େ ରୁଦ୍ଧ କ୍ରନ୍ଦନର ରବ !
ମାତୃହରା ସନ୍ତାନର ମର୍ତ୍ତ୍ୟେ କାହିଁ ସ୍ଥାନ ?
କେ କରିବ ମାତୃହରା ବେଦନା ସନ୍ଧାନ ?
ଝରିବ ଅଉ କା ବକ୍ଷୁଁ ଦୁର୍ଦ୍ଦିନେ ମମତା ?
ଦେଖିବ କାହୁଁବା ଅଉ ଦୁଃଖ ଅକୁଳତା ?

୨—ଉପବନେ କେତେ ମ୍ଳାନ ଫୁଲ ପଡ଼େ ଝରି,
ପୁଣି କେତେ ଉଠେ ଫୁଟି ଶିର ଉଚ୍ଚକରି,
ଉତ୍‌ଫୁଲ୍ଲ ତାରୁଣ୍ୟ ବଶେ ଯେସନ ତରୁଣୀ
ହାସ୍ୟ-ଲାସ୍ୟେ ମର୍ତ୍ତ୍ୟେ ଅଣେ ସୁଧା ସୁରଧୁନୀ !
ମୃତ୍ୟୁକୁ ହଟାଇ ପ୍ରୀତ୍ୟୁ ହସଇ ଜୀବନ;
ଶେଷ ପରିଣତ ପଛେ ମୃତ୍ତିକା ଶୟନ ।
ଦେଇଛ କି ଚକ୍ଷୁ ଦୃଶ୍ୟ ଦେଖିବାର ଲାଗି—
ନଶ୍ୱର ଏ ଦେହେ ପ୍ରାଣ ରହିଅଛି ଜାଗି ?
ସକଳର ଅନୁଭୂତ ଦୂର ଦ୍ରଷ୍ଟାରୂପେ
କରଇ ଗୋଚର, ଦୁର୍ଭେଦ୍ୟ ଏ ଅନ୍ଧକୂପେ !
ସୃଷ୍ଟି ପରିଣତ ପ୍ରଶ୍ନେ ନାହିଁ ଅଧିକାର ?
ମାନବ ଦର୍ଶନ ପଛେ ନିଯୁକ୍ତ ଫୁଲର ?
ଦେଇଛ ସୌନ୍ଦର୍ଯ୍ୟ ବୋଧ କାହିଁକି ମମତା ?
କାହିଁକି ପରାଣେ ଏ ଦୁଃସହ ପ୍ରୀତ ବ୍ୟଥା ?

୩—ବିପୁଳ ସୃଷ୍ଟିର ତୁମେ ପ୍ରାଣ ପାରାବାର,
ସଦା ଉଦ୍‌ବେଳିତ ନିତ୍ୟ ଶିର ନିରାକାର,

ଇନ୍ଦ୍ରିୟର ଅଗୋଚରେ ଅବ୍ୟକ୍ତ ଅଚିନ୍ତ୍ୟ,
ଜାଣି ପ୍ରଭୁ କାହିଁପାଇଁ ବିକଳ ଏ ଚିତ୍ତ ?
ଜାଣିଛୁ ଏ ଜୀବ ସୃଷ୍ଟି ସାଗରେ ବୁଦ୍‌ବୁଦ,
କେବେ ଲୀନ ମହାବକ୍ଷେ କେବେ ଉଦବୁଦ୍ଧ ।
ଜାଣେ ମୃତ୍ୟୁ ତୁମ କୋଳେ ପ୍ରଶାନ୍ତ ସୁଷୁପ୍ତି,
ଅଲଂଘ୍ୟ ବିଧାନ ଭୁଲି ଆତ୍ମ ପରିତୃପ୍ତି—
ଖୋଜେ ସଦା ମୂଢ଼ ମନ ପରମ ନିୟନ୍ତା !
ଆପଣା ନିୟନ୍ତା ହୋଇ ଲଭେଁ ଖାଲି ବ୍ୟଥା ।
ଭୁଲଇଁ ଜନନୀ ତୁଣ୍ଡେ ଦେଇଥିଲେ କ୍ଷୀର,
ବେଦନାର ରାତି ଜାଗି ଢାଳିଥିଲି ନୀର,
ଥାନ୍ତେ ଚିରକାଳ ପାଶେ ଆତ୍ମତୃପ୍ତି ଲାଗି
ଭୁଲିଯାଏଁ ଆତ୍ମା ଅନ୍ତରର ଅନୁରାଗୀ !

୪— ବିରାମ ଲଭିଛ ତୁମେ ପରମ ଜନନୀ !
କ୍ଷୁଦ୍ର ବୁଦ୍ଧି ସୂକ୍ଷ୍ମଗତ ପାରେ ନାହିଁ ଚିଣି !
ତେଣୁ ଏ ଦୌର୍ବଲ୍ୟ, ଚକ୍ଷେ ଏ ଅଶ୍ରୁ ବିକାର,
ଜାଣେ ତୁମ ପ୍ରତି ମାତା ଘୋର ଅବିଚାର !
ଭାବେଁ ପୋଛୁ ଅଶ୍ରୁ କରି ଅଙ୍ଗ ପ୍ରକ୍ଷାଳନ
ତବ ଆତ୍ମା ଶାନ୍ତି ଲାଗି କରିବି ତର୍ପଣ ।
ବଞ୍ଚିବି ଜୀବନେ ହସି ତବ ଦୈନ୍ୟ-ଦୀକ୍ଷା,
ଦେଇ ଯେ ପ୍ରଦୀପ କରେ ଜାଳିବି ତା ଶିଖା—
ପରମ ଯତନେ, ନିତ୍ୟ କରିବି ସ୍ମରଣ,
ପରମ ତ୍ୟାଗର ଶୁଭ୍ର ପ୍ରଶାନ୍ତ ନୟନ !
ଶାନ୍ତ ହେଉ ଚିତାନଳ ସନ୍ତାନ ଲୋତକେ ।
ଶାନ୍ତ ହେଉ ଚକ୍ଷୁ ଗ୍ଲାନି ତବ ପୁଣ୍ୟାଲୋକେ !

ସକଳ ଅପୂର୍ଣ୍ଣେ ଯନ୍ତ୍ର ଲଭୁ ଗୋ ପୂର୍ଣ୍ଣତା,
ଶଦାପ୍ତ ଜନନି ! ସାର ହେଉ ତବ ବ୍ୟଥା !

୫—ପବିତ୍ର ଶ୍ମଶାନ ଭୂମି ! ଶବ ଶବଦଗଧ,
କ୍ଷିତି ଅପ ତେଜ ବ୍ୟୋମ ବାୟୁ ନିସ୍ତବଧ,—
ଆଦରେ ନିଯୁକ୍ତ ବର ଦେହୀ ଶେଷ ସଞ୍ଚା,
ପୋଛ ଶେଷ ଅଶ୍ରୁ ପୋଛୁ ଦିଅ ସବୁ ବ୍ୟଥା !
ଦୁଃଖ ଶୋକଯୁକ୍ତ ! ବ୍ୟଥା ପରମ ଅନନ୍ଦ !
ସେ ଅନନ୍ଦ ଲଭି ସୃଷ୍ଟି ନିବାଁକ ନିସ୍ପନ୍ଦ !
ନୀରବେ ମଙ୍ଗଲ ବିଧି କରଇ ସ୍ୱୀକାର,
ପରଶି ମରଣି ଯୋଗେ ଅଜ ନିର୍ବିକାର !
ଏଣୁ ସେ ପରଶ୍ମି, ସ୍ପର୍ଶେ ବସ୍ତ୍ର-ଶବ-ଗନ୍ଧ,
ପ୍ରାଣପୂତ ପରିପ୍ଲୁତ ! ମୁକ୍ତ ହୁଏ ବନ୍ଧ !
ଯୋଗୀ-ଔଦାସୀନ୍ୟ ଶବ୍ଦେ ଯାଉଛୁ ଚେତାଇ
ଅନ୍ତରାତ୍ମା ଉଠେ କହି "ଅରେ ଦୁଃଖ କାହିଁ ?"
ଏସନେ ଜନନୀ ନିଭି ଗଲ ତୁମ୍ଭ ସଞ୍ଚା !
ଧଳା ମେଘ ଖଣ୍ଡେ ମୋର ଅପୂର୍ବ ମମତା !

୬—କାନ୍ଦୁଛନ୍ତି କେତେ ପ୍ରାଣୀ ଅଜ ତୁମ୍ଭ ଲଗି,
ତୁମ ସ୍ତନ୍ୟ ପୁଷ୍ଟ ମୋର ପ୍ରାଣ ବଇରାଗୀ
ବିଦ୍ଧ୍ୱଲେ କରଇ ଜୀବନର ଜୟଗାନ !
ଶୂନ୍ୟ ଜୀବନର ପ୍ରଶ୍ନ ଅଜ ସମାଧାନ !
ଯେଉଁ ନିର୍ବିକାର ପ୍ରାଣି ଦୈନ୍ୟ ବିଦଗଧ,
ତାର ଶ୍ରେଷ୍ଠ ପୁରସ୍କାର ଲେଖକ ସମ୍ପଦ,

ଦେଇଯାଅ ସେହ୍ନ ପ୍ରାଣ ଏ ରକ୍ତେ ମିଶାଇ,
ନିର୍ବିକାର ଚିତ୍ତେ ସୃଷ୍ଟି ଜୟ ଗାନ ଗାଇ,
ଆନନ୍ଦ ପ୍ରଦୀପ ଜାଳି ମୃତ୍ୟୁ ଅନ୍ଧକାରେ,
ସୃଷ୍ଟିର ମଙ୍ଗଳ ସ୍ୱର ଚିର ନିର୍ବିକାରେ,
ମିଶିଯାଏଁ ହସି ହସି । ଲୀନ ହେଉ ଭୟ !
ଛିତ ଅପନବ ମୋର ଆନନ୍ଦ ଆଶ୍ରୟ !
ଯାଇଛ ଜନନୀ ଯାଅ ! ଆଶା ତୁମ ପଥ···
ଜୀବନେ ସାର୍ଥକ ହେଉ ମାତା ମନୋରଥ !

[୧୯୩୭]



## ପ୍ରଭୁତ୍ୱ ବିକାର

ସ୍ୱଳ୍ପ ବୁଦ୍ଧି କ୍ଷୀଣ ଜୀବୀ ନତ କର ମଥା,
ଫୁଲାଇ ଗୁଲିକୁ ଗଲା ! ଦେଖି ସେ ଉଗ୍ରତା—
ହାସ୍ୟ ଉପୁଜଇ ମନେ ଦେଖି ବ୍ୟବହାର,
ଦୁରାରୋଗ୍ୟ ହେବ ଶେଷେ ପ୍ରଭୁତ୍ୱ ବିକାର !
ହୋଇନି କର୍ତ୍ତବ୍ୟ ଜ୍ଞାନ, ଦାୟିତ୍ୱର ମୋହ,
ହରନ୍ତି ଦର୍ଶନ ! ତେଣୁ ଆତ୍ମସମାରୋହ ?
ପଞ୍ଜୁରୁ ଓଲଟି ହେବୁ ଦିବସେ ଜଳକା
ଅଙ୍କାଡ଼େ ବସିଲେ ଥରେ କାଳ ଗଲା ଧକ୍କା
ହସିବେ ଜନତା ସିନା ମଣ୍ଡ ଯାକୁ ମଞ୍ଚ ?
ଦେଖି ହେବେ ଖୁସି ତୋର ଭଗ୍ନ କାହ୍ନଦଣ୍ଡ ।

କାଳହସ୍ତେ ଚୂର୍ଣ୍ଣୀଭୂତ ଶତ ଭ୍ରମ-ଦମ୍ଭ,
ସମୃଦ୍ଧ ସାକେତ କେତେ ହୋଇଅଛି ପଦା,
ସ୍ପର୍ଦ୍ଧି ମାନବ କାଠ ତର୍ଜନ ଗର୍ଜନ,
କ୍ଷୁଦ୍ର କ୍ଷୁଦ୍ରତମ ଥରେ ହେଉ ତୋ ସ୍ମରଣ !



## ଭାରତବର୍ଷ

୧—ପୂରବ ପଶ୍ଚିମେ ରକ୍ଷ-ଦାନବର ଲୀଳା !
ମଧ୍ୟ ଏ ଭାରତ ଭୂମେ ଖେଳ ପୁଣ୍ୟଶୀଳା,
ଗାଉଛଠେ, "ସ୍ୱାର୍ଥ-ଚିନ୍ତା ସଦା ଅମଙ୍ଗଳ ।
ଆତ୍ମତ୍ୟାଗେ ସଦା ସୁଖ କୋଟି ଜନ୍ମଫଳ ।"
ଦେଖୁଛୁ ଏ ମୂକ ଧ୍ୟାୟ ଚିରକାଳ ରହୁ,
ସ୍ୱାର୍ଥର ଶୋଣିତ ସ୍ରୋତ ଯାଏ କେତେ ବହୁ,
ଙ୍କେତେ ଜାତ ଅଭ୍ୟୁଦୟ ପଲକେ ପତନ
ସକଳ ନଶ୍ୱର ମେଲେ ଚିର ସନାତନ
ହେ ଭାରତ, ସ୍ଫୁରେ ତବ ଆତ୍ମତ୍ୟାଗ ଦୀକ୍ଷା !
ପରାର୍ଥେ ଏ ଦେଶ ରାଜା ପଥେ ମାଗେ ଭିକ୍ଷା,
ବିଶ୍ୱ ହିତେ କରେ ତ୍ୟାଗ ରାଜ୍ୟ ନାରୀ ଭୋଗ !
ସନାତନ ଏ ବିଶ୍ୱର ତବ ରାଜଯୋଗ !
ନିର୍ବାଣ ସରବ ହେଲେ ଅମୃତ ଧରମ,
ଏ ପୁଣ୍ୟ ଭୂମିର ମୋର ହେଉ କୋଟି ଜନ୍ମ !

୨—ମାନବର ଦର୍ପେ ଯେବେ ଥରୁଛଠେ ମାଟି,
କୋଟି ଆର୍ତ୍ତ କଣ୍ଠ ସ୍ୱରେ ନଭ ଯାଏ ଫାଟି,
ସ୍ୱାର୍ଥର ନିଶ୍ୱାସେ ଚତୁର୍ଦ୍ଦିଗ କମ୍ପିତ
ବିପଲ୍ଲ ଶୋଣିତଲିପ୍ସା ! ଶୁଣେ ସେ ସଙ୍ଗୀତ—

"ସକଳ ପ୍ରପଞ୍ଚ ମିଥ୍ୟା ଭୂମା ସତ୍ୟସାର !
ତ୍ୟାଗେ ସୁଖ ସନାତନ, ପ୍ରଶାନ୍ତ ବିକାର !
ତ୍ୟାଗେ ଭୂମା-ଅନୁଭୂତି ! ଅମୃତ ଆନନ୍ଦ
ବିପଥ ମାନବ ଶାନ୍ତ ହେଉ ତବ ଦ୍ୱନ୍ଦ୍ୱ !".
ଜନନୀ ଭାରତ ତବ ସନାତନ ବାଣୀ
କରଇ ପ୍ରଚାର ନିତ୍ୟ ପର୍ବତ ବନାନୀ;
ଶୈଳ ଗୁମ୍ଫା ଶିଳା ସ୍ତମ୍ଭ ସର୍ବେ ସମସ୍ୱରେ
ଗାଆନ୍ତି ନିର୍ଭୟେ ସୃଷ୍ଟି ସ୍ୱାର୍ଥ ସଂଘର୍ଷରେ !
ଶମଇ ଶୋଣିତ ତୃଷା, ଆତ୍ମଘାତୀ ରଣ,
ହିମାଳୟ ସମ ସ୍ଥିର ସତ୍ୟ ସନାତନ !

---

## *ଆଧୁନିକ ବର୍ବରତା—

୧— ଥିଲେ ପୁରାତନ ଅହା ଜାତି ଯେତେ ଗୋଟି
ଏକେ ଏକେ ଧରା ପରେ ପଡ଼ିଲେଣି ଲୋଟି !
ବିଷଣ୍ଣ ମଳିନ ଯେହ୍ନେ ଅସ୍ତଗାମୀ ରବି
ସମୁଜ୍ଜ୍ୱଳ ଇତିବୃତ୍ତ ତାଙ୍କ ତୁଲେ ଛବି ।
ପୁରାତନ ଜାତି ଶିରେ ନବ୍ୟ ବର୍ବରତା,
ସଗର୍ବେ ପ୍ରଚାରେ ନିଜ ବିଜୟ ବାରତା !
ଦଳି ଅବନତ ଶିର କରେ ରକ୍ତପାନ
ପ୍ରାଣର ମର୍ଯ୍ୟାଦା ଆଜ ବୁଝେ ନାହିଁ ପ୍ରାଣୀ ।
ପୂଜ୍ୟ ଯେହ୍ନେ ଭଗବାନ ! ନ ଶୁଏ ଶ୍ରବଣ
କ୍ଷୁଧିତ ଆତୁର ଜାତି ବିକଳ କ୍ରନ୍ଦନ !

* ଚୀନ୍ ଯାପାନ ଯୁଦ୍ଧ ଉପଲକ୍ଷରେ ।

ଚଳି ପଡ଼େ ପ୍ରାଣୀ ପଥେ ଯେସନ୍ତେ ମାଛି ମଶା,
ସଗର୍ବେ ବିଜୟୀ ହସେ ଦେଖି ହୀନ ଦଶା ।
ତୁଚ୍ଛ ପଶୁ ପ୍ରାଣେ କେତେ ପୀରତି ମମତା,
ଠା ତହୁଁ କୁତ୍ସିତ ଘୃଣ୍ୟ ନିଷ୍ଠୁର ସଭ୍ୟତା !

୨—ବର୍ବର ସଭ୍ୟତା ! ସ୍ଥିର କର ତୋର ଗତି,
ଶାନ୍ତ ହେଉ ଧ୍ୱଂସ ଲୀଳା ଅସହ୍ୟ ଯେ ଅତି !
ଆଜ ଯେ ବୁଭୁକ୍ଷା ଅଗ୍ନି ଅନେ ଯାଏ ଦହି
କାଲି ସେ ଦହିବ ତୋତେ ପାରିବୁ ତ ସହି ?
ପୁରାତନ ବୋଲି ଯାକୁ କରୁ ଅବହେଳା,
ପ୍ରାଣର ମାଧୁର୍ଯ୍ୟ ତହିଁ ନ କରେ କି ଖେଳା ?
ସଜଳ ସ୍ନେହ ନେହ ବେଦନା, କେତେ ତହିଁ ପ୍ରାସ,
ନାହିଁ ଅବା ତହିଁ କେତେ ଯୁଗ ଇତିହାସ !
ଉଚ୍ଛୃଙ୍ଖଳ କୁତ୍ସିତ ଯା ଯାହା ଅମଙ୍ଗଳ
ସେତେ ବର୍ବରତା କାଳ ହରିଛି ସକଳ ।
ଥାପିଛି ସହସ୍ର ଯୁଗ ମଙ୍ଗଳ ବିଭୂତି
ପୁରାତନ ମାନବର ସୂକ୍ଷ୍ମ ଅନୁଭୂତି !
ସଂହର ସେ ଧ୍ୱଂସଲୀଳା ପୂଜ୍ୟ ହେଉ ପ୍ରାଣ,
ପୂଜ୍ୟ ହେଉ ପୁରାତନ ଶିବ ଅବଦାନ ।

୩—ରଣଡଙ୍କା ତୂରୀଭେରୀ କମ୍ପାଏ ଆକାଶ
ଧ୍ୱନିତ ରୌଦ୍ରେ ବିଜୟୀର ଅଟ୍ଟହାସ !
କୋଟି ଅସହାୟ ପ୍ରାଣ କାନ୍ଦଇ ଆତୁରେ,
ସ୍ୱାର୍ଥୀର ଅମୋଘ ଯନ୍ତ୍ର ଚୂରଇ ନିଷ୍ଠୁରେ ।

ବର୍ବରତା ଶାନ୍ତ ମୈତ୍ରୀ କରେ ପରାହତ,
ପ୍ରତିଷ୍ଠିତ ଯହିଁ ଦିନେ ଖ୍ରୀଷ୍ଟ ତଥାଗତ ।
ବହୁଛି ରକ୍ତର ବନ୍ୟା ଗରଜେ କମାଣ
ପ୍ରକ୍ଷିପ୍ତ ବିଷାକ୍ତ ବାଷ୍ପେ ପ୍ରାଣୀ ଲୟମାନ !
ଆଜି ମଧ୍ୟ ତଥାଗତ ମାଗୁଛନ୍ତି ଭିକ୍ଷା,
ଖ୍ରୀଷ୍ଟ ହୃଦ ରକ୍ତଗାର ପଡ଼ିନାହିଁ ଫିକା,
ଅଦ୍ୟାପି ମାନବ ଦ୍ୱାରେ ଯାଉଛନ୍ତି ଡାକି,
"ସଂହର ସଂହର ଅସ୍ତ୍ର !" ଅଶ୍ରୁପୂର୍ଣ୍ଣ ଆଖି !
କିଏ ବା ଶୁଣିବ ଡାକ ଡାକିଲେ କାତରେ ?
ମାନବ ସେ ନାହିଁ ଆଜି ଆପଣାର ଘରେ !



## ଆଗଭର

ତରୁଣ ତାପସ ଆଗଭର
ହୁଅ ଆଗଭର !
ଦୁର୍ଦ୍ଦିନ ତମେ କ୍ଷୁଣ୍ଣ ନୋହୁ ତୋ ଅନ୍ତର ।
କ୍ଷୁଣ୍ଣ ନୋହୁ ତୋ ପରାଣନିଷ୍ଠା,
ଅଗ୍ନି ମନ୍ତ୍ରେ ଲଭ ପ୍ରତିଷ୍ଠା,
ନିର୍ଜୀବ ଶିରେ ପଦାଘାତ କର
ତରୁଣ ନିଶାଣ ତୋଳି ଧର !
ଚିର ନିର୍ଭୀକ ଆଗଭର !
ପଶ୍ଚାତେ ତୋର ମୃତ୍ୟୁ ଗହ୍ୱର,
ହଟସେ ନିର୍ଭୀକ ନତ ନୋହୁ ଶିର,

ପ୍ରାଣ ଅମୃତ ନିତ୍ୟ ଦାମ୍ବାଦ —

ଗାଇ ଜୀବନର ମନ୍ତ୍ର—

ଅଗଭର ହୁଅ ଅଗଭର ।

ବିଶ୍ୱ ଏଇ ସୃଷ୍ଟିର ରସେ ନିତ୍ୟ ତୁ ଅଧିକାରୀ,

ନିର୍ଜୀବ ଜ୍ଞାନ ମିଥ୍ୟା ଦୁଆରେ ଅନ୍ଧ ପୁଣି ତୁ ଭିକାରୀ ?

ଶୁଷ୍କ ଶାସ୍ତ୍ର କି ଜାଣେ ତଥ୍ୟ ?

ନିର୍ଜୀବ ସେବା ଜୀବନ-ସତ୍ୟ ?

ଶିର ସବୁଜ ତୋ ତରୁଣ ସୃଷ୍ଟି !

ଆନନ୍ଦ ତୋର ସହଚର,

ବନ୍ଦ କର ତୋ ଶ୍ରବଣ ଦୁଆର

ଅଗଭର ହୁଅ ଅଗଭର !

ପିଚ୍ଛିଳ ପଥ ? ନାହିଁ ନାହିଁ ଭୟ !

ବିଦ୍ୟୁତ ତୋର ଗତି,

ଶିର ଜୀବନ୍ତ ତୋହଲାଗି ସିନା

ବହନ୍ତି ମର୍ତ୍ତ୍ୟ ଯୁଗ ଯୁଗ ଭାଗିରଥୀ ?

ପଡ଼ ରହୁ ପଛେ ସେତେ କୁତ୍ସିତ

ବ୍ୟଙ୍ଗ କୁତ୍ସା ମ୍ଲାନ ଇଙ୍ଗିତ—

ତାରୁଣ୍ୟ ଅଧିକାରୀ !

ବନ୍ଧ ଗତା-ଶୁର ମିଥ୍ୟା ଜଡ଼ତା

ଶିର ସିନା ହେବ ଭାରୀ ?

ସୃଷ୍ଟିର ଅପରୂପ ଆନନ୍ଦ,

ନିର୍ଦ୍ଦେଶ କରୁ ତୋ ଗତି ଛନ୍ଦ,

ବିଶ୍ୱ ! ରସେ ହେ ଶିର ! ରସିକ

ବାନ୍ଧ ଜୀବନ ଯନ୍ତ୍ର ।

ଅଗଭର ଅରେ ଅଗଭର ।

ଅଙ୍କୁରେ ଜନ୍ମାର ମୁଗ୍ଧ ଅଲୋକେ

ଫୁଟିଛରେ ପଦ୍ମଫୁଲ !

ଅନନ୍ଦେ ଢାଳ ମୂଳ !

ତର ତାରୁଣ୍ୟ ତୁ ତାର ଦାୟାଦ

ଅତୀତ ଭ୍ରାନ୍ତ ଭୁଲ ।

ସେ କୁସୁମ ବନା କାହିଁ ତୋ ଶାନ୍ତ ?

ଅତୀତ ତାଡ଼ନା ମିଥ୍ୟା ଭ୍ରାନ୍ତ !

ସତ୍ୟର ସେନା କାହିଁକି ଅଟକ

ଯିବୁଁ ପଶ୍ଚାତେ ଥରଥର ?

ଅଗବର ହୁଅ ଅଗବର ।



## ବନ୍ଦୀ-ବନ୍ଦନା

ଜୀବନ ବନ୍ଧୁ ଜୟ ଜୟ ହେ !

ଜୟ ଚିର ମଙ୍ଗଳମୟ ହେ !

ଦୁର୍ଦ୍ଦିନେ ଙ୍ଗରେ ତବ ଭରସା,

ତମିରେ ତୁମର ପ୍ରୀତ ବରଷା,

କୌମୁଦୀ ଚିତ ପଟେ ସହସା

ଅନ୍ତର ଚିର ନିର୍ଭୟ ହେ !

ଜୟ ଚିର ମଙ୍ଗଳମୟ ହେ । ୧ ।

ଯାହାର ଦୁଖ ଅବସାନେ,

ପରଶେ ଶୀତଳ ଛାୟା ପ୍ରାଣେ,

ସୃଷ୍ଟି ଜହ୍ନଲେ ତୁମ ଟାଣେ,

ସକଳ ଗ୍ଲାନି ମୋହ କ୍ଷୟ ହେ,
ଜୟ ଶିବ ମଙ୍ଗଳମୟ ହେ । ୨ ।

ଅନ୍ଧାରେ ବିଜୁଳିର ଚମକେ
ନିର୍ଚ୍ଛୁରିତା ଜ୍ୟୋତିହୀର ପଲକେ
ନିର୍ଜୀବ ଅଙ୍ଗ ମୋ ପୁଲକେ
ଲଭି ତୁମ ବାଣୀ ବରାଭୟ ହେ ।
ଜୟ ଶିବ ମଙ୍ଗଳମୟ ହେ । ୩ ।

ମରୁରେ ବହାଇ ପୁଣି ଝରଣା,
ହସେ ଉଷା ଆଲୋକବରଣା,
ମିଥ୍ୟାର ଉଦ୍ଭ୍ରାନ୍ତ ଯାତନା,
ସକଳ ମନ୍ଦହାସେ ଲୟ ହେ,
ଜୟ ଶିବ ମଙ୍ଗଳମୟ ହେ । ୪ ।

ଜୟ ହେ ପରାଣ ମହାସିନ୍ଧୁ !
ସୁବିପୁଳ ମୁଁ ସଲିଳବିନ୍ଦୁ !
ଧନ୍ୟ ଦେଖି ସେ ମୁଖ ଇନ୍ଦୁ
ସକଳ ପାପଗ୍ଲାନିକ୍ଷୟ ହେ !
ଜୟ ଶିବ ମଙ୍ଗଳମୟ ହେ । ୫ ।

ଶୁଭ୍ର କୁସୁମ କେତେ ଝରଇ
ନବୀନ କୁଞ୍ଜବନ ଭରଇ
ନିର୍ଝର କଳଗୀତି ସ୍ଫୁରଇ
ଜୀବନ ଜୈବ ବାଣୀ ବହ ହେ
ଜୟ ଶିବ ମଙ୍ଗଳମୟ ହେ । ୬ ।

[୧୯୩୮]

# ଭକ୍ତର ଗର୍ବ

ତୁମର ଗର୍ବ ହେଉ ଏ ଜୀବନେ ସାର,
ଅନ ଯାଗର ବଦଳ ହେଉ ନାରଖାର,
ତୁହି ହେ ଦମ୍ଭ ଅମ୍ଭାର ଅଭିମାନ,
ତୁଚ୍ଛତା ହର ଏ ମରୁରେ ଅଣି ପ୍ରାଣ । ୧ ।

ତୁମରି ଗର୍ବେ ବକ୍ଷ ଗୋ ହେଉ ସ୍ଫୀତ,
ମିଥ୍ୟା ସମୀପେ ନିର୍ଭୟ କର ଚିତ,
ଚିର ମଙ୍ଗଳ ସକଳ ଦୀନତା ହର,
ଧ୍ରୁବ ହେଉ ତବ ବାଣୀ ଚିର ନିର୍ଭର । । ୨ ।

ଅଳ୍ପର ମୋହେ ମାନବର ଅରାଧନା,
ଭ୍ରମେ କଲେ କେବେ କୁଣ୍ଠିତ ମୋ ରସନା,
କର ହେ ବିକଳ ନିଷ୍ଠୁର ଘାତେ ଗାଢ଼
ତୁମରି ଗର୍ବ ହେଉ ଏ ଜୀବନ ବଡ଼ । ୩ ।

ତୁମରି ଗର୍ବେ ଅଶ୍ରୁ ଯାଉ ହେ ବହି,
ଅଖ୍ୟାତ ରହି ନ ରହୁଁ ଘୃଣାରେ ମହି,
ନ ପୂରୁ ଉଦର ଅଙ୍ଗେ ନ ମିଳୁ ବନା,
ତୁମରି ଗର୍ବ ନିତ୍ୟ ମୋ ଅରାଧନା । ୪ ।

ନିଃସ୍ୱ ଜୀବନ ହେଉ ଚିର ସମ୍ବଳ,
ତୁଚ୍ଛ ମାନବ-ବନ୍ଦନାରେ କି ଫଳ ?
ତବ ବନ୍ଦନା ଅନ୍ତର କରୁ ପୂତ,
ତୁଚ୍ଛର ମୋହ ଗର୍ବ ଭସ୍ମୀଭୂତ । ୫ ।





# ବେଶ ରଚନା

ରୂପସୀ ରହସି କର ସୁବେଶ ରଚନା,
ନୟନେ ଫୁଟିଉ ତବ ବାସନ୍ତ କଳ୍ପନା !
ବାସନ୍ତ ସ୍ୱପନ ସେ ଗୋ ବାସନ୍ତ ରହସ୍ୟ,
ଉଚ୍ଛୁଳେ ଗୋପନେ ତହିଁ ନିତ୍ୟ ସୃଷ୍ଟି ରସ !
ଜାଣେ ନା ଜାଗୁଛ ଅବା, ଗୁପ୍ତ ଅଭିସାର ,
ବାସକ ସଜ୍ଜାର ଭ୍ରାନ୍ତ, ରଜନୀ ବିକାର ।
ଦେଖଇଁ ମୁଁ ବ୍ରୀଡ଼ାନତ ସେ ନୟନ ତଳେ
ପ୍ରୀତି-ସ୍ୱର୍ଣ୍ଣ-ଦୀପ ବାତି ତହିଁ ପ୍ରତିଫଳେ !
ମନ୍ଦର ଅନ୍ଧାରେ ସେ ଗୋ ପରମ କଲ୍ୟାଣ,
ଅକ୍ଲେଶେ ପଡ଼ଇ ଧରା ଦିଗ୍‌ବିଜୟୀ ପ୍ରାଣ ।
ସକଳ ଜିଗୀଷା ଭୁଲି ନିଜେ ଦିଏ ଧରା,
ମଙ୍ଗଳର କେଉଁ ବାଣୀ ବେଶସଜ୍ଜା ପରା ?
ସାଜ ଗୋ କଲ୍ୟାଣମୟି ନୁହେ ସେ ଅଳୀକ,
ଦୂରେ ଦୀନ ବନ୍ଦୀ ଗାଏ ସୃଷ୍ଟି ମାଙ୍ଗଳିକ ।



# ପଥେ ଘାଟେ

ପଥେ ଘାଟେ କେତେ ଭରମିଲି ଏକା
ଡାକନାହିଁ ସିନା ତୁମରି ଦୁଆରେ,
ପ୍ରୀତି-ବାଣୀ ଯେତେ ନ ମାନିଲି ମନ
ମିଶିଲି ଗୋପନ ପ୍ରାଣ ହାହାକାରେ;
ଭରମେ ଭରମି ପାଦଗଲି ଭାଜି,
ଆଖିପାଣି ମଲି ଦେଖି ସ୍ୱପ୍ନବାଜି,
ଦୂର ନଭ ଶଶି ପଡ଼ିଲାକି ହାତେ ?
ମିଶିଗଲି ବେଳାକାଳ-ପାରାବାରେ ।୧।

ନ ପୂରିଲି ଆଶା ନ ଶମିଲି ବ୍ୟଥା,
କେତେ କାହିଁ ବାକି ରହିଗଲି କଥା,
ସକଳ ଶୂନ୍ୟତା ଭେଦ ବାଜଉଠେ
ତୁମରି ବିରହ ଶ୍ରାବଣ ଅନ୍ଧାରେ ।୨।

ତୁମରି ବିରହ ଆଜି ସ୍ମୃତିଧାର,
ଆସ ପ୍ରିୟତମ ମୋ ଘର ସୁନ୍ଦର,
ପର ପରି କଲି କେତେ ହତାଦର;
ପର ପ୍ରୀତି ରସେ ଶମଇ କି ତୃଷା ?
ବଳଇ କି ପ୍ରୀତି ଝରା ଫୁଲହାରେ । ୩ ।

---

## *ବଧୂ-ଦର୍ଶନ

୧— ଦେଖି ଆସିଅଛ କନ୍ୟା ? ହୋଇଛୁ ପସନ୍ଦ ?
ଅବ୍ୟକ୍ତ ସେ ମୁଖପଦ୍ମ ଯେସନ୍ତ ପର୍ବଚନ୍ଦ୍ର ?
କବି ଭୃଙ୍ଗର ତହିଁ ତଳେ ସ୍ଥାନ ନାହିଁ ?
ପରିପୂର୍ଣ୍ଣ ଏ ଜୀବନ ଥରେ ଦେଲେ ଭୃହିଁ ?
ବନ୍ଧୁଲି ଅଧରୁ ଅବା ରକ୍ତପଦ୍ମେ ଝରି ?
ରକ୍ତାଭ ସେ ଗଣ୍ଡେ ଯାଏ ପଲକେ ସନ୍ତରି—
କେତେ ନବ ଭାବ ପ୍ରୀତି ମମତା ଦ୍ୟୋତକ ?
କ୍ଷଣେ କ୍ଷଣେ ଜାଗେ ଅଙ୍ଗେ ଅପୂର୍ବ ପୁଲକ ?
ନିର୍ଜୀବ ଏ ନାରୀ ସୃଷ୍ଟି ? ନାହିଁ ବା ସ୍ପନ୍ଦନ ?
ସେ ନାରୀ ଜୀବନ ତହିଁ ଅପୂର୍ବ ସ୍ୱପନ ?
ଭାବମୟୀ ସେ ଗୃହିଣୀ, ସେ ଶିଳ୍ପ ଅତୁଳ ?
ଉଷା ଲେକେ ଅର୍ଦ୍ଧସ୍ଫୁଟ ମୁଗ୍ଧ-ପଦ୍ମଫୁଲ ?
ପଦ୍ମ ବା କିଂଶୁକ ଥରେ ଦେଖିଗଲ ଜାଣି ?
ଅଥବା ଗୋଲାପ ପ୍ରୀତି ନାଶା ହୁଏ ହାଣି ?

୨— କ୍ଷଣିକର ଦେଖା ! ତୃପ୍ତ ହେଲ ଚରଦାସ ?
ଜାଣିଛ ତ ବନ୍ଧୁ ନୁହେ ପ୍ରୀତି-ଉପହାସ ?
କ୍ଷଣିକର ଜ୍ଞାନ ! ତହୁଁ ଏତେକ ଗରବ !
ଥିବ ଅବା ଦିବ୍ୟ ଦୃଷ୍ଟି ! ଦେଖିଛ ସରବ ?
ଦେଖିଛ ଅନ୍ତରେ ଦିବ୍ୟ ଦେବତା ମନ୍ଦର ?
ଲଭିଛ ସେ ପୁଣ୍ୟପ୍ରଭା ରମଣୀ ସୃଷ୍ଟିର ?

ଦେଖିଛ ଗୋପନ ତାର ଅଶ୍ରୁସିକ୍ତ ପ୍ରାଣ ?
ନିତ୍ୟ ସୃଷ୍ଟି ନାଶ ଯହିଁ କରେ ସାମଗାନ ?
ଦେଖିଛ ନାଶରୁ ଶକ୍ତି ଅପୂର୍ବ ସାହସ ?
ପୌରୁଷ ସୁନ୍ଦର ଲଭ ଯା ସ୍ନିଗ୍ଧ ପରଶ ?
ସଂଗ୍ରାମେ କଷିବ କାନ୍ଧ ଅଛି ମନେ ବଳ ?
ପୌରୁଷର ଖାଦ୍ୟ ଲାଗି ଅଛି ନା କୌଶଳ ?
ଅବା ସେ ଗୋଲାପ ମ୍ଳାନ ହେବ ସୂର୍ଯ୍ୟ ତେଜେ ?
ଥାପିବାର ସାର ଦୁଗ୍ଧ ଫେନନିଭ ଶେଯେ ?

୩—ମୋ ପୀରତ କଥା ପୁଛୁ ? ନାହିଁ ଶୁଣା ଜଣା,
କାଳସ୍ରୋତେ ଭେଟ ହେଲା ଅଜ୍ଞାତ ଲଳନା,
ଅର୍ଦ୍ଧ ସ୍ଫୁଟ ସ୍ରୋତ-ଫୁଲ କରେ ନେଲି ତୋଳି,
ବର୍ଷ ଅନ୍ତେ ରହସ୍ୟ ମୁଁ ନ ପାରିଲି ଖୋଲି ।
ତାରୁଣ୍ୟ-ଉଦ୍‌ବେଗ-ବ୍ୟଥା ଦେଲା ନାହିଁ କହି
ଅନବଦ୍ୟ ବ୍ରୀଡ଼ା ଦେଖି ଗାଏ ହେଲି ଦହି !
କରିଛି ସହସ୍ରାଘାତ, ବୁଝିନି ସେ ଅର୍ଥ,
ଆତ୍ମ ପରକାଶ ଲାଗି ଥର ଅସମର୍ଥ !
ନ ବୁଝି ମୋ ନିଷ୍ଠୁରତା ସଜଳ ଲୋଚନ,
ଶିଶୁସମ କରିଛି ସେ ଆତ୍ମସମର୍ପଣ ।
ପରିଚୟ ହେଲା ଯେବେ ଶେଷ ମଧୁକାଳ !
ନିଃଶେଷ ତାରୁଣ୍ୟ ଦୀପ୍ତି, ସେ ନର-କଙ୍କାଳ !
ନୁହେ ସେ ଗୋଲାପ, ତେଣୁ ଦେଇ ନାହିଁ ପୀଡ଼ା,
ସକଳ ବସନ୍ତ ମେଳେ ଜୀବନ୍ତ ତା ବ୍ରୀଡ଼ା !

୪—ସହସ୍ର କଳ୍ପନା ମୋହ କବରୀ ସୁନ୍ଦରୀ,
ତାରୁଣ୍ୟ ବାସନା ପଦେ ହୋଇଛୁ ତା ଚୂଳି ।
ବୁଝିନି ତା ଅର୍ଥ ସେହୁ ନିର୍ବୋଧ ବାଳିକା,
ମନେ ହସେ ! କେବେ ନସ୍ତ ଦେଖି ବାସ୍ପିକା !
ଡାକିଲେ ସୋହାଗେ ଥରେ ଏକାନ୍ତେ ରହସି,
"କି ଅବା ଗୁପତ କଥା ?" ତୁଚ୍ଛେ ଯାଏ ହସି ।
ଭୁଲିଅଛୁ ଯେତେଥର କରିବି ମୁଁ ତ୍ୟାଗ,
ହୃଦ୍‌ତର କରି ବାଢେ ତାର ଅନୁରାଗ ।
ଜୀବନ ସଂଗ୍ରାମେ ଯହିଁ ନ ପାରେଁ ଭରସି,
ଅମୋଘ ବିକ୍ରମ ଦମ୍ଭେ କାହ୍ନ ଦିଏ କଷି ।
ବ୍ୟର୍ଥତାର ଅବସାଦେ ପଡ଼ିଲେ ମୁଁ ଲସି,
କ୍ଷୀଣ ନେତ୍ର ମ୍ଳାନ ଓଷ୍ଠାଧାରେ ଯାଏ ହସି ।
ଭାବିଲେ ଯହିଁ ଶୂନ୍ୟପାତ୍ର, ରକ୍ତ ମାଂସ ଛନ୍ନ—
ଯୌବନ ଦୀପ୍ତି, ତହିଁ ପ୍ରୀତିପୂର୍ଣ୍ଣ ପରଚୟ !
ତ୍ୟାଗ କରେ ଯେଉଁ କର ଝାଣ ଶିଳା ପରି
ଭକ୍ତିରେଁ ସଂସାରମରୁ ହୃଦେ ତାକୁ ଧରି ।
ମଳିନ ତାରୁଣ୍ୟ ମୋହ, ବଢ଼ଇ ବୟସ;
ଚୂଡ଼ତର ମାତ୍ର ପ୍ରୀତି ଦୁର୍ବୋଧ ରହସ୍ୟ !

[୧୯୩୮]



* କୌଣସି ବନ୍ଧୁଙ୍କ ବିବାହୋପଲକ୍ଷେ

## ମାଟିର ଉପହାସ

ଭେବୁଥିଲି ବାସ ତାଳି ସକଳ ନୈପୁଣ୍ୟ,
ପଡ଼ିନାହିଁ ଘାତ, ଜମା ପାଶେ ଇଟା ଚୂନ;
କେତେ ସୁଖ କଲପନା ଯାଉଥିଲି ଗଣି
କାହିଁ ଉପବନ, କାହିଁ ସ୍ଥାପିବ ଧରଣୀ ।
ଉଜ୍ଜ୍ୱଳ ଦଶିବ ପୁର ପ୍ରିୟା-କାଶ-ହାସେ,
ଅପୂର୍ବ ଆନନ୍ଦ ପୁଣି ଶିଶୁକଣ୍ଠ ଭାଷେ;
ମାଟିରେ ଉଠିବ ଗଢ଼ି ସ୍ୱର୍ଣ୍ଣ ସିଂହାସନ,
ମାଟିର କୁଟୀର ହେବ ଦେବତା-ଭବନ ।
ଢାଳି ତାର ମନ ପ୍ରାଣ ଅପୂର୍ବ କୌଶଳ,
ଭାଳିଥିଲି ଫୁଟାଇବ ମରୁରେ କମଳ,
ଶେଷ ହେଲା କ୍ଷଣେ ସବୁ ଷ୍ଟା ଫିକର ଫନ୍ଦ,
ଆସିଲା ସେପାରୁ ଡାକ ! କ୍ଷଣେ ହେଲା ଧନ୍ଦ—
ଶିଶୁ ସମ ! ଇଟା ଚୂନ ହସେ ଅନ୍ଧକାରେ !
ଶୁଭେ "ରାମ ନାମ ସତ୍ୟ" ନିର୍ଜ୍ଜନ ନିଶାରେ ।



## *ଅନ୍ନ-ସମସ୍ୟା

— —

ଯୁଗଳ ସ୍ଥନ ବଦାନ୍ୟ-ଅର୍ଥୀ ଦୂର ପଶ୍ଚିମ ଯାତ୍ରୀ !
ବାଷ୍ପୀୟ ପୋତେ ତୃତୀୟ ଶ୍ରେଣୀରେ ସ୍ୱଳ୍ପ ଅସନ ପାତ,
କଟାଇ ଦେଲେଣି ସିନ୍ଧୁ ବକ୍ଷେ ସାତୋଟି ରଜନୀ ଦିବା,
ବାହାର ଜଗମ ଅନ୍ଧାର ପର ଭବିଷ୍ୟ କାର କବା—

* ଡାକ୍ତର ମାୟାଧର ମାନସିଂହଙ୍କର ବିଲାତ ଭ୍ରମଣକାହାଣୀ ପଠନାନ୍ତର ।

କେହି ନ ଜାଣଇ ଅଭ୍ୟନ୍ତରେ କେତେ ଜନ ଅଣା ହୋଇଛ,
ସେଥିଲାଗି ଶତ ଯାତ୍ରୀର ପୀଡ଼ା କେତେ ଜନ ଅଛେ ଭୁଞ୍ଜି ।
ତୃତୀୟ ଶ୍ରେଣୀର ଯାତ୍ରୀ ବେଦନା ଅସହ୍ୟ କେତେ ଅଙ୍ଗେ,
ସହଯାତ୍ରୀ ସେ ପୁଚ୍ଛେ ବନ୍ଧୁଙ୍କୁ ଯୌବନ-ରସ-ରଙ୍ଗେ;—
"ଦରିଦ୍ର ମୁହିଁ ବରିଛି ଏ ଦଶା, ନାହିଁ ମୋ ଉପାୟ ଅଉ,
ତୁମେ କାହିଁପାଇଁ ସହୁଛ ନର୍କେ ସମ୍ପଦ ଏତେ ଥାଉଁ ?
ଧନିକର ସୁତ ସୁଖର ଦାୟାଦ ସ୍ୱେଚ୍ଛାରେ ବର ଦୈନ୍ୟ ?
ନିଷ୍କୃତି ନାହିଁ ଦେବେ ତଳେ ଏଥି ବର୍ବରତାର ସୈନ୍ୟ *।"
"ଜାଣନା ବନ୍ଧୁ !" ଉତ୍ତରେ ଆନ "ଅଭିଜାତ ଛବି ତଳେ,
ଜୀବନ ଦୈନ୍ୟ କରୁଣ-କାହାଣୀ-ମନ୍ଦ-ପ୍ରଦୀପ ଜଳେ !
ଜାଣନା ବରିଛି ସ୍ୱେଚ୍ଛାରେ କିଆଁ ନିୟତିର ଉପହାସ
ଦୈନ୍ୟର ବ୍ରତ ବହିଛି ସୁଖେ ମୁଁ, ଶୁଣ ମୋର ଇତିହାସ ।"

— ୨ —

"ତକ୍ଷଶୀଳାର ଅଧିବାସୀ ଆମେ ଚୌଦ ଭଗିନୀ ଭାଇ
ଜନକ ଜନନୀ ସହାୟ ଆମର ଆଗପଛ କେହି ନାହିଁ ।
ରୁଗ୍‌ଣା ଜନନୀ, ବୃଦ୍ଧ ପିତା, ବୃତ୍ତି ଅଧ୍ୟାପନା,
ସ୍ୱଳ୍ପ ବେତନ ମିଳେ ଯା ମାତର ଆୟରେ ନୁହେ ସେ ଗଣା ।
ଅକାଳରେ ପୁଣି ବୃନ୍ତଚ୍ୟୁତ ଚୌଦରୁ ତିନି ଜଣ
ରହିଗଲୁଁ ବାକି ଯେତେ ଜଣ ସାର ନିୟତି ସହିତେ ରଣ ।
ବୃଦ୍ଧ ବୟସେ ଜରନ୍ତ ପିତା କ୍ଳାନ୍ତିବିହୀନ ଶ୍ରମ,
ଆମରି ସୁଖର ଚିନ୍ତାରେ ସେ ଯେ ନିତ୍ୟ ଗଳଦ୍‌ଘର୍ମ ।
ରୁଗ୍‌ଣା ଜନନୀ ଆମ ଚିନ୍ତାରେ ଦିନୁ ଦିନ କ୍ଷୀଣତର
ଦିନେ ତାଙ୍କରି ଯତ୍ନ ଚେଷ୍ଟା ଜାଣିନାହିଁ ଅବସର ।

* ସାଧାରଣ ନୌଯାତ୍ରୀ ଦଳ ।

ଅଗ୍ରଜ ମୁହିଁ ସନ୍ତାନ ଗଣେ, ହେଲ ଦନ୍ଦ ମୋର ଜ୍ଞାନ—
ଏକଇ ପ୍ରଶ୍ନ ନିତ୍ୟ ଦିବସ ବ୍ୟାକୁଳ କରିଛି ପ୍ରାଣ ।
କି ଲଭ ଯତ୍ନେ ବ୍ୟର୍ଥ ପ୍ରୟାସେ ମିଳେ କାହିଁ ଅମୃତ—
ଇଚ୍ଛାରେ ଗଳେ ଲଗାଇଲେ ଫାଶି ଦୈନ୍ୟ ସ୍ୱେଚ୍ଛାକୃତ ?
ପିତା ହେଉ ଅବା ନମସ୍ୟ ଗୁରୁ, ଅମୃକୃତ ଯେ ପାପ—
ସୁଫଳ ତା ଲଗି ସମ ଅନୁଭୂତ ବ୍ୟର୍ଥ ମନର ତାପ ।
ଦୁର୍ବହ ଏଇ ସଂସାର ଭାର ବହିଲେ ଯେ ପିତା ଜାଣି
ଅବିବେଚନାର ଫଳ ଭୋଗୁଁ ଆମେ ନିରୀହ ଚୌଦ ପ୍ରାଣୀ ।
କେବେ ଦିନେ ଦିନେ ଅସହ୍ୟ ହେଲେ ଦୈନ୍ୟ ଅଭାବ ପୀଡ଼ା,
ମୁକ୍ତ କଣ୍ଠେ କହିଛି ପିଅରେ ଦିଲ ମୁଁ ବିନୟ ବ୍ରୀଡ଼ା—
ବେଲସୁଁ ଉପାୟ ଖୋଜନାହିଁ ତୁମେ ଖଟାଇ ଆପଣା ବୁଦ୍ଧି
ନଦୀ ସ୍ରୋତ ପରି ବଂଶ ସହିତେ ଦୈନ୍ୟର ଜ୍ୱାଳା ବୃଦ୍ଧି !
ଥରେ ନୁହେଁ ବାବୁ ତିନି ଥର ଜାଣି କରିଅଛି ଦୋଷାରୋପ,
ଦେଖିନି ମାସ ଜନକ ଜନନୀ ନୟନ କୋଣରେ କୋପ ।
ଅଜ୍ଞାନେ ଦିନେ କହିଲି "ଦିଅନା ଅହୁରି କେତୋଟି ମାରି
କିବା ପୌରୁଷ ମିଳଇ ଏସନ ହଳାହଳେ ନିତ ଘାରି !"
ସେଦିନ ଦେଖିଛି ଲଜ୍ଜିତ ପିତା ଅବନତ କଲେ ଶିର,
ଅନୁତାପାନଳେ ତିବ୍ର ଦଗ୍ଧ ମାତର ଶାନ୍ତ ଗିର ।
କହିଲେ "ବାବୁ ମୋ ମନ୍ଦଭାଗ୍ୟ ଦୁନିଅରେ ଆଉ କାହିଁ ?
ଆପଣାର ମୋର ଦୁଷ୍କୃତ ଲଗି ଆଉ କିଏ ହେବ ଦାୟୀ ?
ଇଚ୍ଛା କରନି ଚୌଦଙ୍କୁ କେବେଁ, ଲୋଡ଼ିଥିଲି ତିନି ଚାର;
ଚାରକୁ ଚୌଦ କଲ କେ କାହିଁକି ନ ପାରିଲି ଥରେ ବାରି ।
ଖଟାଇଛି ସବୁ ବୁଦ୍ଧି ପ୍ରଜ୍ଞା ପରାହତ ହେଲ ଜ୍ଞାନ,
ଏକଇ ସତ୍ୟ ହୋଇଛି ପ୍ରତୀତ ସୁନ୍ଦରତମ ପ୍ରାଣ !"

ସୁନ୍ଦର ମୋର ଚୌଦ କଳିକା ! କେଉଁଣେ ଗଲେ ତନ୍ନ ଅହା !
ସେହି ଶୂନ୍ୟତା ପୂରାଇବ କିଏ ? ସହାୟ ସେ ରଜ-ବାଛା !
କରିଛି ତ କେତେ ପ୍ରାୟଶ୍ଚିତ୍ତ ! ପେଷିଛି ଶମନ ପୁରେ,
ତନୋଟି ପ୍ରାଣର କମଳ କଳିକା ! ପୁଛୁଅଛି ମୁଁ ଅନ୍ତରେ !
ଅଭେଦ୍ୟ କ୍ରୂର ନିଯ୍ତିର ଦ୍ୱାରେ ପାଇ ନାହିଁ ଉତ୍ତର,
ଦେଲ ଆଜ ବାହୁ ତୋତେ ସ୍ୱାଧୀନତା
ଇଚ୍ଛା ତୋ ଯାହା କର ।
ଇଚ୍ଛା ଯାହାକୁ ଦିଅ ଆଜ ବଳି ମିଶାଇ ଏ ବେନି ପ୍ରାଣୀ !
ଉପାୟ ନ ଦିଶେ !" ରୁଦ୍ଧ କଣ୍ଠ ! ନୟନୁ ଝରଇ ପାଣି !
ହଜିଲା ସକଳ ତରୁଣୀ ଦମ୍ଭ ଗ୍ଭହିଁ ସେ ଆହତ ମୁଖ,
କରୁଣ ନୟନ ସ୍ମରିଲେ ବନ୍ଧୁ ତୁଚ୍ଛ ସକଳ ଦୁଖ !
ସୃଷ୍ଟିରେ ମୋର କିବା ପ୍ରୟୋଜନ-ପ୍ରୟୋଜନ କିବା କାର
ବୁଝିଲି ସେ ଦିନ ବନ୍ଧୁ ପ୍ରଶ୍ନେ ନାହିଁ ମୋର ଅଧିକାର ।
ପିତା ନୁହେଁ ମୁହିଁ ! ସେ ଦିନୁ ବରିଲି ପିତାର-ଅମ୍ନ-ଦାନ,
ସୃଷ୍ଟିର ଲାଗି କିଛି ସାଧନ ଦୀପ୍ତ କଲା ମୋ ଜ୍ଞାନ ।
ସିନ୍ଧୁ ବକ୍ଷ ଅନ୍ଧାରପରି ଶର ରହସ୍ୟମୟ,
କ୍ଷୁଦ୍ର ଜୀବନ ! ମାତର ବନ୍ଧୁ ମୃତ୍ୟୁକୁ କରେ ଜୟ !
ତୁଚ୍ଛ ତାଠାରୁ ସ୍ୱାର୍ଥ ଅଶ୍ରୁ , ତୁଚ୍ଛ ଶତ ସମସ୍ୟା,
ଜୀବନର ସ୍ରୋତେ ଭସାଇ ପାରିଲେ
ଆଜ କି ଦୈନ୍ୟ ଦଶା ?"



# *ବନ୍ଦୀ-ବୀର—

ଯୁଝିଛ ଜନମ ଭୂମି ମାନ ରକ୍ଷା ଲାଗି
ଅକ୍ଳାନ୍ତ ପରାଣେ, ସ୍ମୃତ ରହୁଥିବ ଜାଗି !
ଏ ଧରାର ନିପୀଡ଼ିତ ପଦାନତ ବନ୍ଦି
ଶିଖିବେ ତୁମଠୁଁ ବୀର ମରଣ ଆନନ୍ଦ ।
ତାହାଁକ କୁଞ୍ଚିତ ଭୁରୁ ? ମୁଖ ଅବସନ୍ନ ?
ବେଦନାର ଘୃଣ୍ୟାପାତ ? ସମ୍ମୁଖେ ମରଣ ?।
ପଛେ ପୁଣି ମୃତ୍ୟୁ ସେନା ହସଇ ବିକଟ ?
ସମ୍ମୁଖେ ସେ ବଧ ଭୂମି ଅତି ସନ୍ନିକଟ ?
ତହିଁ ତବ ମର ଦେହ ହେବ ଦ୍ୱିଖଣ୍ଡିତ,—
ମିଶିବ ମାଟିରେ ? ସେଥିଲାଗି ସଙ୍କୁଚିତ ?
ଭାଳିଥିଲ ଅବା ଯୁଦ୍ଧେ ମାରି ଅଗଣନ,
ବରିଥାନ୍ତ ହସି ହସି ବୀରର ମରଣ ?
ବୀରର ମରଣ ନିତ୍ୟ ବୀର କରେ ଦାବି
ମାତ୍ର କାଳହସ୍ତେ ଗୁପ୍ତ ନରଭାଗ୍ୟ ଚାବି ।
ଜାଣେ, ସେ ଉତ୍ତ୍ୟକ୍ତ ପ୍ରାଣ ଶୋଣିତ ତୃଷିତ
ଦେଖି ନର ନିଷ୍ପେଷଣେ ବାକ୍ୟରୁଦ୍ଧ ବ୍ୟଥିତ ।
ସଭ୍ୟତାର ଅତ୍ୟାଚାର ଦୁର୍ନୀତିର ପୀଡ଼ା
କ୍ଷୁବ୍ଧ ଦେଖି ହେବ ତୁମେ ଦାନବର କ୍ରୀଡ଼ା !

* ଅବିସିନିଆର ସେନାଧ୍ୟକ୍ଷ ରାସ୍‌ଦେସ୍ତା । ସେ ଗତ ଇଟାଲି-ଅବିସିନିଆ ଯୁଦ୍ଧରେ ପରାସ୍ତ ହୋଇଥିଲେ । ପରେ ବନ୍ଦୀ ହୋଇ ଶତ୍ରୁ ହସ୍ତରେ ହତ ହୋଇଥିଲେ ।

—ସ.

ନ ପୂରୁଁ ପିପାସା ଅପେ ପଡ଼ିଗଲ ଧରା,
ଶତ୍ରୁ ହସ୍ତେ ତୁମ ପ୍ରାଣ ସମାଧାନ ପରା ?
ଫୁଟିଛ ଅକ୍ଳାନ୍ତ ମଦେ ! ସେତିକି ଆଶ୍ୱାସ !
ଅନ୍ୟାୟ ମିଥ୍ୟାର ତଳେ ହୋଇନାହଁ ଦାସ !
ରହିଅଛି ତବ ଜନ୍ମଭୂମି ଠାଣ ମାନ,
ବିଫଳତା ଲଗି ଦୁଷ୍ଟ ଦେବତା ବିଧାନ ।
ମରଣର ଯାତ୍ରୀ ତୁମ୍ଭେ ନାହିଁ କାଳ ପାଶ,
ବୀରତ୍ୱେ ନୁହଇ ମରଣର ଗୁପ୍ତାପାତ,
ହୁଅ ବୀର ନିର୍ବିକାର ନୁହ ଅଭ ଷୁଣ୍ଡ;
ଆସୁଛନ୍ତି କୋଟି ସେନା କରିବାକୁ ପୂର୍ଣ୍ଣ—
ଅପୂର୍ଣ୍ଣ ରହିଲ ଯାହା, ଜଳିବ ଅନଳ,
ଭସ୍ମ ହେବ ଦବ୍ୟ ଭୂମେ ମାନବ ଗରଳ ।
ସଂଗ୍ରାମର ଅନ୍ତେ ହେଉ ଅଟଳ ବିଶ୍ୱାସ
ସକଳ ପ୍ରପଞ୍ଚ ମେଳେ ଦେବତ୍ୱ ପ୍ରକାଶ ।
ଯାଅ ଦୈବ ସେନା, ଯାଅ ପରମ ନିର୍ଭୀକ,
ତୁମରି ବିଜୟ-ହାସ୍ୟ ବିଜୟୀ ସୈନିକ—
ଦେଖି ହେଉ ସଙ୍କୁଚିତ ! କାଳର ଫୁତ୍କାର
ସକଳ ବିକୃତ କରି ଦିଏ ପରିଷ୍କାର ।
ଜାଣେ ନା ସେ ତୁମ ଭଳି ବୀରର ସମ୍ମାନ
ଗର୍ବ ପରାକ୍ରାନ୍ତ ହେଲେ ବର୍ବର ସମାନ !
ବର୍ବରର ସତ୍ୟ ଧର୍ମ ନୁହେଁ କେବେ ବୁଝା, —
ମହାଜାତି ଧର୍ମ ନାମେ ବର୍ବରତା ପୂଜା !

[ ୧୯୩୭



ଟୀକା—

# *କୌଣସି ପ୍ରଣୟୀଙ୍କ ଉଦ୍ଦେଶ୍ୟରେ

—୧—

ପଙ୍କଜ ପରଶେ ଫୁଲ୍ ପଡ଼ିବ ତ ଝଡ଼ି,
ଝଡ଼ିବ ଶ୍ୟାମଳ ପତ୍ର ! ପାରିବ କି ଧରି ?
ବିବିଧ ରଞ୍ଜନ ସ୍ପୃହା ବିଫଳ ପ୍ରୟାସ,
କ୍ଷୁଦ୍ର କଳା ଶିଳ୍ପେ କରେ କାଳ ଉପହାସ !
କୁସୁମର ଶେଷ ଦଶା ନ ପାରିବ ଦେଖି,
ତେଣୁ ବାସ୍ତବତା ସତ୍ୟ ଯାଉଛ ଉପେକ୍ଷି ?
ଆପଣା ଅକ୍ଷମତା-ମୋହେ ଗିଳି ରୂପ ଫୁଲ,
କେତେଦିନ ଜରା ମୃତ୍ୟୁ ନେତ୍ରେ ଦେବ ଧୂଳି ?
ଶୁଣୁ ନ ଅଦୂରେ ଶୁଭେ କାଳ ଆଗମନୀ ?
କାହିଁ ହେବ କାହିଁ ଅଛି ଦଶଇ ଯା ମଣି।
କରିଥାଅନ୍ତ ମଣି ! କାହିଁ ସେ ପୌରୁଷ ?
ଭଲକୁ କରୁଛ ଭେଲ, ସତ୍ୟ ବିଷଦୃଶ !
ଯେ ମରଣେ କର ଭୟ ତହିଁ ମ୍ରିୟମାଣ,
ତେବେ ଶିଳ୍ପୀ ହେବ ଲଭି ଅମୃତ ସନ୍ଧାନ !

—୨—

ଝରିଲେ କୁସୁମ ତାର ରୂପ ସଉରଭ—
ଲାଗି ରହେ ଚକ୍ଷୁ ପଟେ, ତାର ଅନୁଭବ—
ନିର୍ଜନ ନିଶାରେ ପ୍ରାଣ କରଇ ଆକୁଳ,
ମରିଥାଇ ଜାଗି ଉଠେ ସେ ଅତୁଳ ଫୁଲ !

* ଅନ୍ତରଙ୍ଗ ବନ୍ଧୁଙ୍କୁ ଲିଖିତ ଭାଷାନ୍ତରିତ ପତ୍ର।

ଚେତନେ ପ୍ରୀତିରୁ ବନ୍ଧୁ ସୁଧା ପାଉ ଛଣି ?
ପ୍ରୀତିବନ୍ୟା ତୁମ ଲଗି ବହିବ ଉଜାଣି !
ଯଉବନ ଗଲେ ଜରା ହେବ ଯଉବନ,
ତୁମ୍ଭ ପ୍ରୀତି ଶୁଷ୍କ କାଷ୍ଠ ଅଥବା ଚନ୍ଦନ –
ପଡ଼ିବ ସେ ଦିନ ଧରା ! କାହିଁ ପାଇଁ ଡର ?
ପାଷାଣରେ ହେଲେ ଘଷି ପୀରତି ସୁନ୍ଦର !
କାଠକୁ କରୁଛ ଯତ୍ନ, ଦେଖି ନ ଚନ୍ଦନ !
"ଗନ୍ଧ ଗନ୍ଧ ରୂପ" ବୋଲି ହୃଦୟ ସ୍ପନ୍ଦନ—
ଦିବସେ ସହସ୍ରଥର ! କର ଅତି ଯତ୍ନ !
ବଢ଼ିଯାଏ ଅଜ୍ଞାନତା, ନାହିଁ ମିଳେ ରତ୍ନ !

—୩—

ହେବାର ଯାହା ହେଉ ! କାହିଁକି ଆକୁଳ ?
ପୁଣି ଶୂନ୍ୟ ବ୍ରତତୀରେ ପରିପୂର୍ଣ୍ଣ ଫୁଲ !
ଗଲେ ପୁରାତନ ନବୀନର ଆଗମନ,
ସବୁ ବିବର୍ତ୍ତନ ମେଳେ ବିକଶେ ଜୀବନ !
ହସନ୍ତି ଦେବତା, ଆଉ କିବା ଭ୍ରାନ୍ତିଭୟ ?
ଆବର୍ତ୍ତନେ ବିବର୍ତ୍ତନେ ଜୀବନର ଜୟ !
ଜୀବନ ଅମୃତ ରୂପ ପୀରତି ବିକାଶ .
ମୃତ୍ୟୁ ଆସି ପାଛୁ ଦେଲେ ସବୁ ରହେ ପ୍ରୀତି-ହାସ !
ସେ ରୂପ ଲୋଡ଼ିବ ନାହିଁ ଶୃଙ୍ଗାର ରଚନା,
ଦେହର ତାପେ ନ ବଢ଼ିବ ତା ପ୍ରୀତି ମୂର୍ଚ୍ଛନା;
ଜାଣେନା ଆଶଙ୍କା, ଭୀତି, ରଖିବା ଗୋପନ,
ଶତ ଘୂର୍ଣ୍ଣି-ଝଞ୍ଜା ଜାଣି କରଇ ବରଣ ।

## ନରଦେବତା

୧—ଶୁଣିଲି ମୁଁ ଅଧୁନାର ନରପତି ଜଣେ
ଏ ଭାରତ ଭୂମେ—ନୁହେଁ ପ୍ରତେ—ସ୍ୱପ୍ନ ମଣେଁ !—
ଆପଣାର ରାଜ୍ୟେ ଶୁଣି ଦୁର୍ଭିକ୍ଷ ଆସନ୍ନ—
ତେଜିଛନ୍ତି ସ୍ୱେଚ୍ଛାକ୍ରମେ ବେଳାଏ ଅଶନ ।
ରାଜଭୂଷା ବ୍ୟସନରେ ଦେଇ ଜଳାଞ୍ଜଳି,
କରୁଛନ୍ତି ଆରାଧନା ଦନ୍ତେ ତୃଣ ଧରି—
ଦୁଃସ୍ଥ ପ୍ରଜାବର୍ଗ ଲାଗି; ସ୍ମରି ଅମଙ୍ଗଳ—
ନୟନୁଁ ଝରଇ ଅଶ୍ରୁ ଧାର ଅବିରଳ !
ଭାଳି ଦୀନ-ଧୈର୍ଯ୍ୟ ମୋର ନୁହଇ ସମ୍ଭାଳି
ଦେବତ୍ୱର ମୋହାବେଶ ଆପେ ଉଠେ ଜଳି ।
ଯେ ଦେଶେ ଏସନ ରାଜା ଚିର ଅବ୍ୟପନ୍ନ
ସେ ଦେଶେ ମରଣ ସିନା ମଧୁର ସ୍ୱପନ ?
ଯେ ଦେଶେ ଏସନ ନର-ଦେବତା ମୂରାରି
କି ଭୟୁ ଭାବନା କିସ କରିବ ଭଗାରି ?

୨—ଧିକ୍ କି ସେହୁ ରାଜା ଯାର ପରଜା ଅଶେଷ,
ପ୍ରାଣ ସନମାନ ଲାଗି ଯାନ୍ତି ପରଦେଶ ।
ପର ରାଜ୍ୟେ ପଥେ ଘାଟେ କରନ୍ତି ଶୟନ,
ଚିର ଭିକ୍ଷା-ଅଶୀ ଶୂନ୍ୟ ଅଶନ ବସନ,
ଶ୍ୱାନ କିବା ସମ ପଥେ ଭଜନ୍ତି ମରଣ,
ଗ୍ଲାନି ନିଜ ବସବାସ ପ୍ରବାସ ବରଣି,
ବରନ୍ତି ଅକ୍ଲେଶେ ଶୀତ-ବରଷା-ଜର୍ଜରି,
ରାଜ-ପୀଡ଼ା ଦୁର୍ନୀତିରୁ ନୁହେଁ ସା ଦୂଷଣ ।

ସେ ନର-ପିଶାଚ ତାର ଜନମକୁ ଧିକ୍,
ଚିର ଭ୍ରାନ୍ତ ତାର ସୁଖ-କଳ୍ପନା ଅଳୀକ ।
ଜାଣି ସେ ବଢ଼ାଏ ଅମ୍ଭ-ଅପମାନ-ଭାର
ତା ନାମ ଧରିବା ତୁଣ୍ଡେ ଲାଗେ ପ୍ରାଣୀ ପାପ ।
ପାପଗ୍ରହ ବୋଲି ଅପସୃତ ଘୃଣୀ ଜନ୍ମ
ଜଇଁ ଥାଇ ମରେ ସେହୁ ପାରେ ନାହିଁ ଜାଣି ।

—ଘ—

ଏ ଭାରତେ ଥିଲେ ରାଜା—କହେ ଇତିବୃତ୍ତ—
ଶପଥ ମାନବ ଲାଗି ପରମ ଅମୃତ—
ଅଣିବା ଆଶାରେ ତେଜି ଗଲେ ରାଜଗାଦି,
ହୃଦୟଶୋଣିତ ଦାନେ ହେଲେ ସର୍ବତ୍ୟାଗୀ,
ଛେଦିଲେ ସ୍ୱହସ୍ତେ ପ୍ରଜା ଲାଗି ହୃଦପ୍ରୀତି,
ବରିଲେ ସନ୍ନ୍ୟାସ ! ଜାଲ ଯାଇଅଛି ବ୍ରତ !
ପୁଣ୍ୟଶ୍ଳୋକ ରାଜନ୍ୟଙ୍କ ତୁମେ ବଂଶଧର,
ମରୁଦ୍ୟାନ ଫୁଲ ସମ ଦିଶୁଛ ସୁନ୍ଦର ।
ସେ ଆଦର୍ଶ ଅଜ୍ଞ ଭାଳେ ଅଙ୍ଗାର-ମାଣିକ୍ୟ,
ରକ୍ଷକର ନୀତି ଯହିଁ ସ୍ୱାର୍ଥ ଅରକ୍ଷିତ,
ଶ୍ୱାପଦ-ବୁଭୁକ୍ଷା ଭଳେ ଶତ ରାଜ-ପ୍ରାଣେ !
ପରଜା ଦୁର୍ଭିକ୍ଷ ଶୁଣୁଛନ୍ତି କେ ଅବଧାନେ !
ନ ଖାଇ ମରିନି ରାଜା, ମରିଛନ୍ତି ଅଜାଦେବ
ନମସ୍ୟ ଅମୃତ-ରାଜ୍ୟ ଭୋଗ ନିର୍ବିବାଦେ !



ଚରେ ଶତ ନିଷ୍ଠୁରତା, ଖଷଇ କ୍ଷୁଦ୍ରତା,'
[illegible]ସାଏ ଅଗ୍ନିଦାହୁଁ ପୀରତି ମମତା !'

— ୪ —

ସେ ପ୍ରୀତି ସେ ରୂପ ଗ୍ରାହ୍ୟ ଜୀବନର ସାର
ଅନ୍ୟ ଯେତେ ରୂପ ଅଭ୍ର ଖାଲି ହାହାକାର !
ଭାବୁଛ ଜୀବନ ରସ ପିଇବ ନିଗାଡ଼ି ?
ଜାହିରେ ଯୌବନ ସୃଷ୍ଟି ? ମୃତ୍ୟୁ ମୁଖେ 'କାଳି
ସହିଛ କି କାଳ ଏତେ ଆତ୍ମ-ପ୍ରବଞ୍ଚନା ?
ଲତାକୁଞ୍ଜ ଅନ୍ତରାଳେ ଶୃଙ୍ଗାର ରଚନା—
ଲୁପ୍ତ ହେବ ଦିନେ ! ବନ୍ଧୁ ଆସିଲେ ବରଷା !
ଭାଳିଛ ସେ ଦିନ କିଂବା ପ୍ରାଣର ଭରସା ?
ପୀରତି ଲୁଟିବ ପିତା, ଭୋଗେ ଅହମତା,
ମୃତ୍ୟୁ ତହୁଁ ଶତଗୁଣି ବାଧିବ ସେ ବ୍ୟଥା ।
ଝରିପଡ଼ୁ ଫୁଲ ! ନଦୀ ବହୁ ସାଉ ଦୂରେ !
ଭାଙ୍ଗୁ ଭୋଗ ସଂକୀର୍ଣ୍ଣତା ! କୋଟି ପଲ୍ଲୀପୁରେ-
ଉଚ୍ଛୁଳୁ ଆନନ୍ଦ ଗାନ ! କ୍ଷୀଣ ସେ ରୂପସୀ—
କୋଟିରୂପେ ତା ମାଧୁର୍ଯ୍ୟ ଉଠୁନା ଝକଶି !
ଭାବୁ କିବା ? ରୂପ ଅଭ୍ର ଯେବେ [illegible] କ୍ଷୀଣ,
ଅକାଳେ ମରଣେ ପ୍ରୀତି ଲଭିବ ବିଳୀନ !

[ ୧୯୩୮ ]

